# ଅଳଙ୍କାର
# ସାହିତ୍ୟର କ୍ରମ-ବିକାଶ

ଲେଖକ

ଶ୍ରୀ ଗୌରୀକୁମାର ବ୍ରହ୍ମା ଏମ୍. ଏ.

# ଉପୋଦ୍‌ଘାତ

ଓଡ଼ିଆ ଭାଷାରେ ଗବେଷଣାତ୍ମକ ଗ୍ରନ୍ଥର ସଂଖ୍ୟା ଅତ୍ୟଳ୍ପ ମାତ୍ର । ମାତୃସାହିତ୍ୟର ଉନ୍ନତି ବିଧାନ ଲାଗି ପ୍ରତ୍ୟେକ ଶିକ୍ଷିତ ଦେଶବାସୀର ଯେଉଁ କର୍ତ୍ତବ୍ୟ ଅଛି, ଏ ଗ୍ରନ୍ଥ ଲେଖିବା ଦ୍ୱାରା ସେହି କର୍ତ୍ତବ୍ୟର ଆଂଶିକ ପାଳନ ଦିଗରେ ମୁଁ ବ୍ରତୀ ହେଉଛି—ଏହାହିଁ ଆତ୍ମପ୍ରସାଦର କାରଣ । ଅଗତ୍ୟା ସ୍ପଷ୍ଟ କହିଦେବା ଉଚିତ, ଏଥିରେ ମୋର ବିଶେଷ କିଛି ବାହାଦୁରୀ ନାହିଁ । ସଂସ୍କୃତ ସାହିତ୍ୟର ବିଭିନ୍ନ ବିଭାଗରେ ପାଶ୍ଚାତ୍ୟ ପଣ୍ଡିତମାନେ ଗତ ବହୁବର୍ଷ ଧରି କମ୍ ଗବେଷଣା କରି ନାହାନ୍ତି । ମାତ୍ର ଅଧିକାଂଶ ତଥ୍ୟ ଓ ଉଦ୍‌ଘାଟିତ ତଥ୍ୟ ଇଂରାଜୀ ଭାଷାରେ ଲିଖିତ ହୋଇଥିବାରୁ ଦେଶୀୟ ପଣ୍ଡିତ ମଣ୍ଡଳୀ ଏବଂ ଶିକ୍ଷିତ ସାଧାରଣ ସେଗୁଡ଼ିକ ସମ୍ୟକ୍ ହୃଦୟଙ୍ଗମ କରିବାର ସୁଯୋଗ ପାଆନ୍ତି ନାହିଁ । ତେଣୁ ଏକ ପକ୍ଷରେ ପାଶ୍ଚାତ୍ୟ ଅନୁସନ୍ଧିତ୍ସୁମାନଙ୍କର ତଥ୍ୟସଙ୍କୁଳ ଗବେଷଣର ପାଠକମାନଙ୍କର ସମକ୍ଷରେ ଉପସ୍ଥାପନ କରିବା ଏବଂ ଅନ୍ୟ ପକ୍ଷରେ ଅଳଂକାର-ପାଠୀମାନଙ୍କର କେବଳ ଗ୍ରନ୍ଥଗତ ବିଷୟ ବସ୍ତୁର ଜ୍ଞାନ ପରିବର୍ତ୍ତେ ତତ୍‌ସହ ଐତିହାସିକ ଦୃଷ୍ଟିକୋଣରୁ ବିଭିନ୍ନ ଗ୍ରନ୍ଥ ଅଧ୍ୟୟନ ଦିଗରେ ଉତ୍ସାହିତ କରିବା, ଏ ଦୁଇଟି ଲକ୍ଷ୍ୟ ମଧ୍ୟ ବିଶେଷ ଭାବରେ ମତେ ଉଦ୍‌ବୁଦ୍ଧ କରିଛି । ଅଧ୍ୟାପକ ପାଠକ, ତ୍ରିବେଦୀ, କାଣେ ପ୍ରମୁଖ ଗବେଷକମାନଙ୍କର ପଦାଙ୍କାନୁସରଣ କରି ନ ଥିଲେ ଏବଂ ମୌଳିକ ଗ୍ରନ୍ଥ ଲେଖିବାରେ ପ୍ରବୃତ୍ତ ହୋଇ ଥିଲେ ଏ ଗ୍ରନ୍ଥର ପ୍ରଣୟନ ସମ୍ଭବ ହୋଇ ନ ଥାନ୍ତା ।

କିନ୍ତୁ ଏଥିରୁ ବୁଝିବା ଉଚିତ ନହେ ଯେ ମୁଁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଗ୍ରନ୍ଥର ଅନୁବାଦ ମାତ୍ର କରିଛି । ମୋର ଦେବ୍ପାଦ, ଅଷ୍ଟାଦଶ ବିଦ୍ୟାଭୂଷଣ ପଣ୍ଡିତ ଶ୍ରୀ ଚନ୍ଦ୍ରଶେଖର ବ୍ରହ୍ମା ବହୁସ୍ଥଳରେ ପାଶ୍ଚାତ୍ୟ ଗବେଷକମାନଙ୍କର ମତଖଣ୍ଡନ କରି ସ୍ୱୀୟ ଯୁକ୍ତିର ବଳିଷ୍ଠତା ଓ ଚମତ୍କାରିତାରେ ମତେ ପ୍ରଭାବିତ କରିଛନ୍ତି । ତାଙ୍କ ସଂକଳିତ (ବୋଧହୁଏ ଓଡ଼ିଶାରେ ଗରିଷ୍ଠ) ସଂସ୍କୃତ ପାଠାଗାରରୁ ଏଥିରେ ଆଲୋଚିତ ପ୍ରାୟ ପ୍ରତ୍ୟେକ ଅଳଂକାର-ଗ୍ରନ୍ଥ ଦେଖିବାର ସୁଯୋଗ ପାଇଛି । ତଥାପି ଗବେଷଣାର କ୍ଷେତ୍ର ସବୁଠାରେ ସନ୍ଦେହ ସଂକୁଳ । ବିଶେଷତଃ ଅଳଙ୍କାର ଶାସ୍ତ୍ରର ଧାରାବାହିକ ଉନ୍ନତି ଓ ଆଲଂକାରିକ ମତବାଦ ଏବଂ ଲେଖକଙ୍କ ଜୀବନୀ ପ୍ରଭୃତିର ଆଲୋଚନା ଯେତେ କଷ୍ଟ ସାଧ୍ୟ ବ୍ୟାପାର, ତାହା କଥାରେ ବୁଝାଇ ହେବ ନାହିଁ । ମୋର ସିଦ୍ଧାନ୍ତ ଯେ ଏକାନ୍ତ ଯୁକ୍ତି ସଙ୍ଗତ, ଏ କଥା ମୁଁ କେବେ କହି ପାରିବ ନାହିଁ । ତେବେ ଉପଲବ୍ଧ ଅନୁମତ ଓ ପ୍ରମାଣରୁ ଯେଉଁଟି ଗ୍ରାହ୍ୟ ବିବେଚିତ ହୋଇଛି ତାହା ଉପସ୍ଥାପିତ କରିଛି । ଅନେକ ସ୍ଥଳରେ ସଂଦେହର ସମ୍ମୁଖୀନ ହୋଇ ସିଦ୍ଧାନ୍ତର ଭାର ବିଜ୍ଞ ପାଠକଙ୍କ ଉପରେ ନ୍ୟସ୍ତ କରିବା ବ୍ୟତୀତ ଉପାୟାନ୍ତର ପାଇ ନାହିଁ । ଅପାତତଃ ମୋର ଏ କୃତି ଦ୍ୱାରା କାହାର କିଛି ଉପକାର ନ ହୋଇ ମଧ୍ୟ ଯେବେ ପାଣ୍ଡିତ୍ୟ ପୂର୍ଣ୍ଣ, ଭ୍ରମପ୍ରମାଦ ହୀନ, ଗବେଷଣାତ୍ମକ ଓ ନିସ୍ପଷ୍ଟ ଯୁକ୍ତିଯୁକ୍ତ ଖଣ୍ଡିଏ 'ଅଳଂକାର ସାହିତ୍ୟର ଇତିହାସ' ଲେଖିବା ପାଇଁ ଜଣେ ସୁଧୀ ଉତ୍କଳୀୟ ଉତ୍ସାହିତ ହୁଅନ୍ତି, ତେବେ ମୋର ସମସ୍ତ ପରିଶ୍ରମ ସାର୍ଥକ ମନେ କରିବି ।

ଅଠମଲ୍ଲିକର ସ୍ୱନାମ ଧନ୍ୟ ସାହିତ୍ୟ ସେବୀ ରାଜା ଶ୍ରୀ ଶ୍ରୀ ଶ୍ରୀ କିଶୋର ଚନ୍ଦ୍ର ଦେବଙ୍କର ପ୍ରେରଣା ପାଇ ନ ଥିଲେ ଗ୍ରନ୍ଥଟି ଅଜ

ସୂକ୍ଷ୍ମ ଅନ୍ତର୍ଦୃଷ୍ଟି ରଖୁଥାନ୍ତି । 'ଗୁଣୀ ଗୁଣଂ ବେତ୍ତି' । ଏହା ଲେଖିବାର ପ୍ରାରମ୍ଭିକ ଅବସ୍ଥାରେ ତାଙ୍କ ସାକ୍ଷାତ୍ ଲାଭକରି ବିଶେଷ ଉତ୍ସାହିତ ହୋଇଥିଲି । ଗଞ୍ଜାମର ଯେ ଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଅଧ୍ୟକ୍ଷ ଥିବାବେଳେ ଯେଉଁ ପ୍ରଳୟଙ୍କର ବିପଦ ମୋର ଅସ୍ତିତ୍ୱ ଲୋପ କରିବାକୁ ବସିଥିଲା, ତାହାର ନିଷ୍ଠୁର ତାଡ଼ନା ଆଜୀବନ ବିସ୍ମୃତ ହୋଇ ପାରିବ ନାହିଁ । ସେହି ସର୍ବଗ୍ରାସୀ ବିପଦ ସ୍ରୋତରେ ମୁଁ ତୃଣବତ୍ ଚାଳିତ ହେଉଥିବା ବେଳେ ଏହି ସୁନାମ ଧନ୍ୟ ନରପତିଙ୍କର ଦର୍ଶନ କରି ଜଡ଼ ଅଙ୍ଗରେ ପ୍ରାଣର ସଞ୍ଚାର କରିଥିଲି । କଟକର ସୁନାମ ଧନ୍ୟ ଅଡ୍‌ଭୋକେଟ୍ ଶ୍ରୀ ଯୁକ୍ତ ହରିହର ମହାପାତ୍ର, ଟ୍ରେନିଂ କଲେଜର ଅଧ୍ୟକ୍ଷ ଶ୍ରୀଯୁକ୍ତ ମହେଶ ଚନ୍ଦ୍ର ପ୍ରଧାନ, ଏବେ ରେଭେ-ନ୍‌ସା କଲେଜର ଅଧ୍ୟକ୍ଷ ଓ ଶ୍ରୀଯୁକ୍ତ ଗୋଦାବରୀଶ ମହାପାତ୍ର ସେହି ଦୁର୍ଦ୍ଦିନରେ ଯେଉଁ ଧୈର୍ଯ୍ୟ ଉଦାରତା ଓ ମମତା ସହକାରେ ବଳିଷ୍ଠ ପୃଷ୍ଠପୋଷକତା କରିଥିଲେ ଏ ଗ୍ରନ୍ଥର ପ୍ରୁଫ୍ ପଢ଼ିବା ବେଳେ ପ୍ରତ୍ୟେକ ପଙ୍କ୍ତି ତାହା ସ୍ମୃତି ପଟରେ ଅଙ୍କିତ କରି ଦେଉଥାଏ । ଏମାନଙ୍କଠାରେ କୃତଜ୍ଞତା ଜ୍ଞାପନ କରିବାକୁ ମୋର ଭାଷା ନାହିଁ । ବିପନ୍ନ ଥିଲେ ମଧ୍ୟ ଏମାନଙ୍କ ବଳରେ ବଳୀ ହୋଇ ଗ୍ରନ୍ଥ ଲେଖୁଥିଲି ।

ଶେଷରେ କଟକ ଟ୍ରେନିଂ ସ୍କୁଲର ମୋର ପ୍ରିୟ ଛାତ୍ର ଶ୍ରୀମାନ୍ ବଳଭଦ୍ର ମହାନ୍ତି ଏ ଗ୍ରନ୍ଥର ପାଣ୍ଡୁଲିପି ପ୍ରସ୍ତୁତ କରି ମୋର ଅଶେଷ ଆଶୀର୍ବାଦର ପାତ୍ର ହୋଇଛନ୍ତି ।

ପ୍ରତାପ ଲକ୍ଷ୍ମଣ ପୁର,
ପୋ:ଅ: ଗାଙ୍ଗପୁର
ଜି: ଗଞ୍ଜାମ ।

ଇତି
ଗୌରୀକୁମାର ବ୍ରହ୍ମା

# ସୂଚୀ

ବିଷୟ ପୃଷ୍ଠା

**ସପ୍ତମ ପରିଚ୍ଛେଦ :—** । ୧୧୮

(ଏକାଦଶ ଶତାବ୍ଦୀଠାରୁ ତ୍ରୟୋଦଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ) ସରସ୍ୱତୀ କଣ୍ଠାଭରଣ—ଟୀକାଗ୍ରନ୍ଥ—ଭୋଜଙ୍କ ଅନ୍ୟାନ୍ୟ ଗ୍ରନ୍ଥ—ଅଳଂକାର ଶେଖର—ଔଚିତ୍ୟ ବିଚାର ଚର୍ଚ୍ଚା—ବ୍ୟକ୍ତି ବିବେକ—ନିର୍ଭୀକତା—କାବ୍ୟ-ପ୍ରକାଶ—ଦୁଇଟି ସମସ୍ୟା—ସୂତ୍ରର ଅନ୍ୟଦିଗ—ଦ୍ୱିତୀୟ ସମସ୍ୟା—ସମାପ୍ତ—ଟୀକା ଗ୍ରନ୍ଥ—ଅଳଂକାର—ସର୍ବସ୍ୱ—ଉଲ୍ଲିଖିତ ଗ୍ରନ୍ଥ ନାମ—ସମାପ୍ତ—ଟୀକାଗ୍ରନ୍ଥ—ବାଗଭଟ୍ଟାଳଂକାର—ଟୀକା ଗ୍ରନ୍ଥ—ସମାପ୍ତ—କାବ୍ୟାନୁଶାସନ—ଜୟଦେବ—

**ଅଷ୍ଟମ ପରିଚ୍ଛେଦ :—** ୧୪୦

( ଚତୁର୍ଦ୍ଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ) ରସତରଙ୍ଗିଣୀ—ଏକାବଳୀ—ଉଲ୍ଲିଖିତ ଗ୍ରନ୍ଥ ଓ ଟୀକା—ସମାପ୍ତ—ପ୍ରତାପରୁଦ୍ର ଯଶୋଭୂଷଣ—କାବ୍ୟାନୁଶାସନ—ଉଲ୍ଲିଖିତ ଗ୍ରନ୍ଥ—ସାହିତ୍ୟ ରତ୍ନାକର—ସାହିତ୍ୟ ଦର୍ପଣ—ସମାପ୍ତ—ଅଳଂକାର କୌସ୍ତୁଭ—କୁବଳୟାନନ୍ଦ ଓ ଶବ୍ଦ ମୀମାଂସା -ରସ ଗଙ୍ଗାଧର—ସାହିତ୍ୟ ସାର—

---

# ଅଳଙ୍କାର ସାହିତ୍ୟର କ୍ରମବିକାଶ

## ପ୍ରଥମ ପରିଚ୍ଛେଦ

ସାହିତ୍ୟିକମାନେ ଜାଣନ୍ତି, ସାହିତ୍ୟକତା ସମ୍ପାଦନ କରିବାକୁ ହେଲେ ଅଳଙ୍କାର ଶାସ୍ତ୍ରର ପରିଶୀଳନ କେତେଦୂର ଆବଶ୍ୟକ । ଅଳଙ୍କାରଶାସ୍ତ୍ର କାବ୍ୟ-ସଦନର ପ୍ରବେଶ ଦ୍ୱାର ସ୍ୱରୂପ । ପ୍ରାଚୀନ ଭାରତରେ ଏହି ଶାସ୍ତ୍ରର ଚର୍ଚ୍ଚା ବହୁ ବ୍ୟାପକଭାବେ ହେଉଥିଲା । ଆଜି କିନ୍ତୁ ଦେଶର ଅବସ୍ଥା, ଶିକ୍ଷାର ଆଦର୍ଶ, ଅଧ୍ୟାପନାର ସ୍ୱରୂପ, ପାଣ୍ଡିତ୍ୟର ପରିଣାମ ଭିନ୍ନ ଆକାର ଧାରଣ କରିଛି । ଅବଶ୍ୟ ସଂସ୍କୃତ ସାହିତ୍ୟର କୃଷ୍ଟି ତଥା ପୃଷ୍ଠି ଦୃଷ୍ଟିରୁ ଦେଖିଲେ ଏହି ମନ୍ତବ୍ୟର ସତ୍ୟତା ସମ୍ୟକ୍ ଉପଲବ୍ଧ ହେବ । କାବ୍ୟ-ନାୟକ ଓ କବିତା-ନାୟିକାର ମଣ୍ଡନସାଧନ ରୂପେ ସମାଦୃତ ହେଉଥିବାରୁ ଏ ସାହିତ୍ୟିକ ଶାସ୍ତ୍ରର ନାମ ଥିଲା ଅଳଙ୍କାର [illegible] -ପ୍ରତିପାଦନ ଯାଏ ଭାରତୀୟ ଅଧ୍ୟାପକ ନରପତିମାନେ ଅଳଙ୍କାର [illegible] ସାହିତ୍ୟ-ସେବୀମାନଙ୍କୁ 'କନକସ୍ନାନ' କରାଉଥିଲେ, ଅକୁଣ୍ଠିତ ଶବ୍ଦରେ ଅବିରତ

ସେମାନଙ୍କର ଅବସରବିନୋଦନ ଓ ମନୋରଞ୍ଜନରେ ବ୍ରତୀ ଥିଲେ, ସେତେବେଳ ଯାଏ ସଂସ୍କୃତସାହିତ୍ୟର ବହୁମୁଖୀ ଧାରା ବହି ଅବାଧ ଅଖଣ୍ଡ ଗତିରେ ଚାଲିଥିଲା । ବ୍ରାହ୍ମଣମାନଙ୍କର ପାଣ୍ଡିତ୍ୟ ଉପାର୍ଜନ ଯେପରି ଜୀବନର ଏକ ପ୍ରଧାନ ଆଦର୍ଶରୂପେ ବିବେଚିତ ହେଉଥିଲା, ରାଜାମାନଙ୍କର କବି ମନୋରଞ୍ଜନ ଓ ସାହିତ୍ୟ ବିନୋଦନ ସେହିପରି ଏକ କର୍ତ୍ତବ୍ୟରୂପେ ପରିଗଣିତ ହେଉଥିଲା । ସ୍ୱନାମଧନ୍ୟ ରାଜାମାନଙ୍କର ପରମ ଉଦ୍ୟମରେ କବିମାନଙ୍କ ପକ୍ଷେ ଶ୍ରୀ ଓ ସରସ୍ୱତୀଙ୍କ ପରସ୍ପର ବିରୁଦ୍ଧଭାବ ଏକ ଅମୂଳକ କିମ୍ବଦନ୍ତୀରେ ପରିଣତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ଆଜି ଯେତେବେଳେ ଶିକ୍ଷାର ଲକ୍ଷ୍ୟ ଉଦରପୋଷଣ ଓ ସେବକ-ଜୀବନରେ ଉଚ୍ଚପଦର ଅଧିଗ୍ରହଣ, ସେତେବେଳେ ଅନିର୍ବଚନୀୟ ଶବ୍ଦ-ଉଲ୍ଲାସିକା ଆଲଂକାରିକତାର ସାରବତୀ ରସିକତା ନବ୍ୟଶିକ୍ଷିତ ସମାଜରେ ଉପଧାରିତ ନ ହେବା ଆଦୌ ଆଶ୍ଚର୍ଯ୍ୟକର ନୁହେଁ । ଏ ଅର୍ଥନୀତି ପ୍ରଧାନ ଯୁଗରେ ଶିକ୍ଷାର ଆଦର୍ଶ ଏକ ଅଭିନବ ରୂପ ଧାରଣ କରିଛି । ସଂସ୍କୃତ ସାହିତ୍ୟ ରାଜ୍ୟରେ ଦର୍ଶନ, କାବ୍ୟ ପ୍ରଭୃତି ତୁଳନାରେ କାବ୍ୟର ଅପୂର୍ବ ଭୂଷଣ 'ଅଳଂକାର'ର ସ୍ଥାନ ବଡ଼ ଅବନତ ହୋଇ ପଡ଼ିଛି । ଫଳରେ ଭାରତୀୟ ସନ୍ତାନଗଣ ଏତେ ତତ୍ତ୍ୱପୂର୍ଣ୍ଣ, ଏତେ ଗମ୍ଭୀର, ଏତେ ଚମତ୍କାର ଓ ଅତି ମୌଳିକ ଚିନ୍ତାମୂଳକ ଜାତୀୟ ସାହିତ୍ୟର ମେରୁଦଣ୍ଡ ସ୍ୱରୂପ କାବ୍ୟ-ଶାସ୍ତ୍ରର (ଅଳଂକାର ଶାସ୍ତ୍ରର) ମହତ୍ତ୍ୱ ହୃଦୟଙ୍ଗମ କରିବାରୁ ବଞ୍ଚିତ କହିଲେ ଅସତ୍ୟ ବା ଅର୍ଦ୍ଧ ସତ୍ୟ ବୋଲି ଛାତିରେ ହାତଦେଇ କହିହେବ ନାହିଁ । ଆଜି ଦେଖା-ଯାଉଛି, ଆମ ନିଜ ସମ୍ପତ୍ତିର ମୂଲ୍ୟ ଆମେ ବୈଦେଶିକମାନଙ୍କର ମତାମତ ଉପରେ ନିର୍ଭର କରି କେବଳ ସ୍ଥିର କରୁଛୁ ।

ବହୁଯୁଗ ଧରି ସକଳଭାଷାର ଜନନୀ ସ୍ୱରୂପିଣୀ *ସର୍ବାଙ୍ଗ-ସୁନ୍ଦରୀ ସଂସ୍କୃତଭାଷା ମୂର୍ତ୍ତିମତୀ ହୋଇ ଭାରତର ଘରେ ଘରେ ଲୀଳା ବିଳାସରେ ଜନମନ ହରଣ କରୁଥିଲା । କେତେ ଜ୍ଞାନବୀର ମନୀଷୀ ଏ ପବିତ୍ର ଭୂମିରେ ଜନ୍ମଗ୍ରହଣ କରି ଅସାଧାରଣ ଶାନ୍ତ୍ରସ୍ରୋତରେ ସମସ୍ତଙ୍କୁ ପ୍ଲାବିତ କରି ଯାଇଛନ୍ତି, କେତେ ସାହିତ୍ୟସାଧକ ନୀରସ-ମରୁପ୍ରାନ୍ତରରେ ମଧ୍ୟ ଲଳିତକମଳର ବିକାଶ ସାଧନ କରି ଯାଇଛନ୍ତି, କେତେ ସହୃଦୟ-ହୃଦୟୈକ-ବେଦ୍ୟ ମହାକାବ୍ୟ ଏ ଦେଶର ସରସ ଲେଖକମାନଙ୍କର ସୁଦକ୍ଷ ଲେଖନୀରୁ ଅମନ୍ଦ ମନ୍ଦାକିନୀ ପରି ପ୍ରବାହିତ ହୋଇ ଯାଇଛି, କେତେ ପଣ୍ଡିତ ଅକଥନୀୟ ତର୍କଯୁକ୍ତି ଓ ବିଚକ୍ଷଣତା ବଳରେ

* Prof. Bopp—Sanskrit was at one time the only language of the world—ଏକସମୟରେ ସମଗ୍ର ଜଗତରେ ସଂସ୍କୃତ ଥିଲା ଏକମାତ୍ର ଭାଷା ।

Prof. Bopp—Sanskrit is more copious and perfect than Greek and Latin—ସଂସ୍କୃତ ଗ୍ରୀକ୍ ଓ ଲାଟିନ୍ ଭାଷା ତୁଳନାରେ ଅଧିକ ସାରବାନ୍ ଓ ପୂର୍ଣ୍ଣାଙ୍ଗ ଅଟେ ।

M. Dubois—Sanskrit is the origin of the modern languages of Europe—ଇଉରୋପୀୟ ଆଧୁନିକ ଭାଷାମାନଙ୍କର ମୂଳ ହେଉଛି ସଂସ୍କୃତ ।

Prof. Heeren—In point of fact Zend is derived from Sanskrit—(ଜଗତରେ ଅନ୍ୟତମ ପ୍ରାଚୀନ ଭାଷା) ଜେଣ୍ଡଭାଷା ବାସ୍ତବରେ ସଂସ୍କୃତରୁ ଜାତ ।

Dr. Ballantyne All languages of Indo-European family are derived from Sanskrit—ଇଣ୍ଡୋ-ଇଉରୋପୀୟ ଜାତୀର ସମସ୍ତ ଭାଷା ସଂସ୍କୃତରୁ ଉତ୍ପନ୍ନ ।

ଅସଂଖ୍ୟ ସାହିତ୍ୟ ଅଟ୍ଟାଳିକା ନିର୍ମାଣ କରି ଯାଇଛନ୍ତି, ତାର କଳନା ନାହିଁ । ଇତିହାସ ଏ ସମ୍ପର୍କରେ କେବଳ ମୂକ ନୁହେଁ, ମୂଢ଼ ମଧ୍ୟ । ଅବଶ୍ୟ, ଇତିହାସ ଗବେଷଣା-ମନ୍ଦିରରେ ଅନୁସନ୍ଧିତ୍ସୁମାନେ ଏ ମୂଢ଼ତାର ନାନା କାରଣ ଚିନ୍ତା କରି, ସେ ସବୁ ପ୍ରତି ଆମର ଦୃଷ୍ଟି ଆକର୍ଷଣ କରୁଛନ୍ତି । କିନ୍ତୁ ସେ ସୂକ୍ଷ୍ମବିଚାରର କାର୍ଯ୍ୟକାରିତା ବାସ୍ତବ କର୍ମକ୍ଷେତ୍ରରେ ବଡ଼ ନଗଣ୍ୟ । ଐତିହାସିକ ଗବେଷଣା ଦୃଷ୍ଟିରୁ ଏ ସମସ୍ୟାର ସ୍ୱରୂପ ଓ ସମାଧାନ ଯାହା ହେଉ ପଛେ, ସାହିତ୍ୟିକ ଉନ୍ମେଷର ଅସ୍ପଷ୍ଟତା ତଥା ଧାରାବାହିକତାର ଖଣ୍ଡିତ ପ୍ରକୃତି ଆଜି ଭାରତୀୟମାନଙ୍କର ଜାତୀୟ ଗୌରବବୋଧରେ ଏକ ପ୍ରଧାନ ଅନ୍ତରାୟ । ନ ହେଲେକି, ମେକାଲେଙ୍କ ଦ୍ୱାରା କବିବର ରାଧାନାଥଙ୍କ ଭାଷାରେ "ତୁମ୍ଭ ପ୍ରତିକୂଳେ ତୁମ୍ଭଙ୍କୁ ସାକ୍ଷୀ କରିବ ଧନେ" ସଭ୍ୟଭାରତର ଶିକ୍ଷାଙ୍ଗନରେ କେବେ ସମ୍ଭବ ହୋଇଥାନ୍ତା । ବ୍ୟାକରଣ, କୋଷ, ଅର୍ଥନୀତି, ଜ୍ୟୋତିଷ ପ୍ରଭୃତି ସଂସ୍କୃତ ସାହିତ୍ୟର ଅଂଶଗୁଡ଼ିକର ବହୁ ଅଂଶ ଯେପରି କୁଟିଳ କାଳର କରାଳ ଗର୍ଭରେ ଲୀନ ହୋଇ ଯାଇଛି ଠିକ୍ ସେହିପରି ଅଲଙ୍କାର ଗ୍ରନ୍ଥମାନଙ୍କର ବହୁଳତା ସତ୍ତ୍ୱେ ବର୍ତ୍ତମାନ ଅଳ୍ପ କେତେ ଗୋଟିର ଜୀବନ୍ତ ବିଗ୍ରହ ଆମେ ଦେଖିବାକୁ ପାଉ । *

---

* ପାଣିନି ପ୍ରଭୃତିଙ୍କ ଅଳ୍ପ କେତେଗୋଟି ବ୍ୟାକରଣ, ବର୍ତ୍ତମାନ ଦେଖାଯାଉଥିଲେ ସୁଦ୍ଧା, ବ୍ୟାଡି, ଶାକଲ୍ୟ, ସ୍ଫୋଟାୟନ, ଋକ୍ଷବର୍ମଣ, ଗାଲବ ପ୍ରଭୃତିଙ୍କ ଭିନ୍ନ ଭିନ୍ନ ସୂତ୍ର ସମ୍ବଳିତ ପ୍ରାୟ ଏକଶତ ଗ୍ରନ୍ଥ ଥିବାର ଗବେଷଣାରୁ ଜଣାଯାଇଛି । ସେହିପରି ଅମରକୋଷ ତୁଲ୍ୟ ପ୍ରାୟ ବିଂଶତି ଅଭିଧାନଗ୍ରନ୍ଥ ଓ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ପରେ ଭରଦ୍ୱାଜ, କୌଣପଦନ୍ତ, ବାତବ୍ୟାଧି ପ୍ରଭୃତିଙ୍କ ବିଂଶାଧିକ ମୌଳିକ ଅର୍ଥନୀତି ବିଷୟକ ଗ୍ରନ୍ଥ ଥିବା ପ୍ରମାଣିତ ହେଉଛି ।

ଅନୁସନ୍ଧାନପ୍ରିୟ ମାନବ ଯୁଗେ ଯୁଗେ ଲୁପ୍ତ ତତ୍ତ୍ୱଗୁଡ଼ିକର ସନ୍ଧାନ ନେବାରେ ବଡ଼ ଯତ୍ନଶୀଳ ହୋଇ ମଧ୍ୟ ସର୍ବତୋଭାବରେ କୃତକାର୍ଯ୍ୟ ହୋଇ ପାରି ନାହିଁ । ଆଧୁନିକ ଯୁଗର ଜ୍ଞାନ-ପିପାସାକୁଳିତ ପ୍ରତ୍ନତତ୍ତ୍ୱାନୁସନ୍ଧିତ୍ସୁମାନେ ବହୁ ଶ୍ରମ ସ୍ୱୀକାର କରି ଅତୀତର ଅନନ୍ତ ଗର୍ଭରୁ କେତେକ ନୂତନ ତଥ୍ୟ ଆହରଣ କରି ପାରିଛନ୍ତି । ଏହାଦ୍ୱାରା ଭାରତରେ ଏକ ମହନୀୟ କୀର୍ତ୍ତିର ଉଜ୍ଜ୍ୱଳତା ପ୍ରକଟିତ ହେବା ସଙ୍ଗେ ସଙ୍ଗେ ବୈଦେଶିକମାନଙ୍କ ମନରେ ଭାରତୀୟ ଗ୍ରନ୍ଥ ଗତ ପରିବର୍ତ୍ତିତ ହୋଇ ପାରୁଛି । ପ୍ରାଚୀନ ସଂସ୍କାର ଏବଂ ଦରି ସମ୍ପୂର୍ଣ୍ଣ ଲୁପ୍ତ ହୋଇ ଯାଇଥିବାରୁ ଆଜି ଆମର ନିକଟରେ ସଂସ୍କୃତ ସାହିତ୍ୟର ସ୍ୱରୂପ, କାବ୍ୟମାନଙ୍କର ବିଶେଷତ୍ୱ, ଶାସ୍ତ୍ରମାନଙ୍କର ବିଭାଗ ତଥା ତତ୍ ସମ୍ପର୍କୀୟ ନାନା ପ୍ରଧାନ ପ୍ରଧାନ କଥା ଜାଣି ପାରୁ ନାହାନ୍ତି ।

ସଂସ୍କୃତ ସାହିତ୍ୟ, * ସାହିତ୍ୟ ଶବ୍ଦର ଗୌଣ ଅର୍ଥ ଦୃଷ୍ଟିରୁ ଆଲୋଚନା କରିବାକୁ ଗଲେ, ଅଷ୍ଟାଦଶ ଭାଗରେ ବିଭକ୍ତ, ଯଥା:— ଋକ୍‌ବେଦ, ପୁରାଣ, ନ୍ୟାୟ (ନ୍ୟାୟ, ବୈଶେଷିକ), ମୀମାଂସା (ବ୍ରହ୍ମ ଓ କର୍ମମୀମାଂସା), ଧର୍ମଶାସ୍ତ୍ର (ମୁଖ୍ୟତଃ ଉପନିବେଶ ସ୍ମୃତି ଓ ସାଂଖ୍ୟ ଯୋଗ), ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ, ଜ୍ୟୋତିଷ, ଆୟୁର୍ବେଦ, ଧନୁର୍ବେଦ, ଗାନ୍ଧର୍ବବେଦ ଓ ଅର୍ଥନୀତି । ଏ ଅଠରଟି ବିଭାଗ ଅଷ୍ଟାଦଶ ବିଦ୍ୟା ନାମରେ ମଧ୍ୟ କଥିତ ହୋଇଥାଏ । ଏ ଅଠର ବିଭାଗ ମଧ୍ୟରେ ମୁଖ୍ୟ ସାହିତ୍ୟ ସୂଚକ କୌଣସି ବିଭାଗ ନ ଦେଖି ପାଠକଙ୍କ ମନରେ ଏହି ସନ୍ଦେହ ହେବା ସ୍ୱାଭାବିକ ଯେ

* ଗୌଣ ଅର୍ଥରେ ସାହିତ୍ୟ କହିଲେ ସକଳଶାସ୍ତ୍ର ବୁଝାଯାଏ, କିନ୍ତୁ ମୁଖ୍ୟ ଅର୍ଥରେ ଏହା କବି, ଲେଖକ, ନାଟ୍ୟକାର ପ୍ରଭୃତି ବୁଝାଏ ।

ଅଷ୍ଟାଦଶ ବିଦ୍ୟାର ପରିସର ମଧ୍ୟରେ କାବ୍ୟ ପ୍ରଭୃତିର ସ୍ଥାନ ନାହିଁ । କିନ୍ତୁ ଏଠାରେ ସ୍ଥୂଳ ଭାବରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଉକ୍ତ ଅଷ୍ଟାଦଶ ବିଭାଗଗୁଡ଼ିକ ପ୍ରତ୍ୟେକଟିର ନାନା ଉପ-ବିଭାଗ ଅଛି । ଏଗୁଡ଼ିକ ଉକ୍ତ ବିଭାଗ ଗୁଡ଼ିକର ପୂର୍ଣ୍ଣ ବିଶ୍ଳେଷଣ କଲେ ଦେଖାଯିବ, ଏ ପର୍ଯ୍ୟନ୍ତ ଜଗତରେ ଯେତେ ଶିକ୍ଷା ବିଭାଗ ବା ବିଷୟ (Branches of Knowledge or Learning) ଥିବା ଜଣା ଯାଇଛି, ସେ ସବୁ ଅଷ୍ଟାଦଶ ବିଦ୍ୟାର ଅନ୍ତର୍ଵର୍ତ୍ତୀ । ତେଣିଯାକ ଆମର ଆଲୋଚିତ ଅଳଙ୍କାର ହେଉଛି ମୁଖ୍ୟ ସାହିତ୍ୟର ଏକ ଅଙ୍ଗ ଏବଂ ଅଷ୍ଟାଦଶ ବିଦ୍ୟା ମଧ୍ୟରୁ ପ୍ରାଚୀନ ପଣ୍ଡିତମାନଙ୍କର ବିଶ୍ଳେଷଣ ଓ ବିବରଣ ଅନୁସାରେ ଏହା ଚତୁଃଷଷ୍ଟିକଳାଗର୍ଭକ ଅର୍ଥଶାସ୍ତ୍ର ବିଭାଗର ଅନ୍ତର୍ଵର୍ତ୍ତୀ । ଏ ମତବାଦ ସମ୍ବନ୍ଧରେ ଏଠାରେ ଆଉ ବିଶେଷ ବର୍ଣ୍ଣନା ଦ୍ୱାରା ପ୍ରାସଙ୍ଗିକତାର ସୀମାରକ୍ଷିତ ନ ହେବା ଭୟରେ ପଣ୍ଡିତ କୁଳ ସମ୍ମାନିତ ମତ କେବଳ ଉପସ୍ଥାପନ କରି ଅନ୍ୟ ବିଷୟର ଆଲୋଚନାରେ ପ୍ରବୃତ୍ତ ହେଲି ।

କବିର ଯେବେ ଜଣେ ବୈଜ୍ଞାନିକ ସଙ୍ଗେ ତୁଳନା କରା ଯାଏ, ତେବେ କାବ୍ୟ ହେଉଛି ବୈଜ୍ଞାନିକର ଆବିଷ୍କୃତ ବା ନିର୍ମିତ ଏକ ବସ୍ତୁ ଏବଂ ଅଳଙ୍କାର ଶାସ୍ତ୍ର ହେଉଛି ବିଜ୍ଞାନ-ନିୟମାବଳୀ ଲିପିବଦ୍ଧ କରାଯାଇଥିବା ଏକ ଗ୍ରନ୍ଥ । ଏ ତୁଳନା ସର୍ବଥା ଏକ-ଦେଶଦର୍ଶୀ, ତଥାପି ଅଳ୍ପ ଶିକ୍ଷିତ ସମ୍ପ୍ରଦାୟର 'ଅଳଂକାର' ସମ୍ପର୍କରେ ଏକ ସ୍ଥୂଳ ଧାରଣ କରାଇବା ପାଇଁ ଏହା ଗୋଟିଏ ଔପକ୍ରମିକ ସୂଚନା ହିସାବରେ ମୂଲ୍ୟହୀନ କୁହାଯାଇ ପାରିବ ନାହିଁ । ଅଳଂକାର ଶାସ୍ତ୍ରରେ ଯେତେ ଯେତେ ବିଷୟ ଆଲୋଚିତ ହୋଇ-ଥିବାର ଦେଖାଯାଏ, ବାସ୍ତବରେ ଅଳଂକାର (କେବଳ

ଅଲଂକାର ପ୍ରକରଣ) ହୋଇଛନ୍ତି, ସେଥିମଧ୍ୟରୁ ଗୋଟିଏ ମାତ୍ର ବିଷୟ। ତଥାପି ନାଟ୍ୟ, ରସ, କାବ୍ୟର ଗୁଣ ଦୋଷ, ଅଲଂକାର ପ୍ରଭୃତି ନାନା ବିଷୟ ଆଲୋଚିତ ହୋଇଥିବା ଗ୍ରନ୍ଥ ବା ଗ୍ରନ୍ଥ ଗୁଡ଼ିକ ଅଲଂକାର ଶାସ୍ତ୍ରର ଅନ୍ତର୍ଗତ। ଅଲଂକାର ଗ୍ରନ୍ଥମାନଙ୍କର ଯେଉଁ ବିଭାଗ ଏକ ପରବର୍ତ୍ତୀ ପରିଚ୍ଛେଦରେ କରାଯାଇଛି, ସେଥିରୁ ଅଲଂକାର ଶବ୍ଦର ବ୍ୟାପକ ଅର୍ଥ ପରିସ୍ଫୁଟ ହେବ। କେତେ ସ୍ଥଳରେ ଏତିକି ମାତ୍ର କୁହାଯାଇ ପାରେ, ଅଲଂକାର ଶାସ୍ତ୍ର, ରସ ଅଲଂକାରାଦି ନାନା ବିଷୟ ମଧ୍ୟରୁ ଗୋଟିଏ, ଦୁଇଟି ବିଷୟ ଆଲୋଚନା କରାଯାଇଥିବା ଗ୍ରନ୍ଥଗୁଡ଼ିକ ମଧ୍ୟ ଅଲଂକାର-ଶାସ୍ତ୍ର ବା ଅଲଂକାର-ସାହିତ୍ୟର ଅଙ୍ଗ ବୋଲି ଧରାଯାଏ।

ପୂର୍ବରେ କୁହାଯାଇଛି, ଅଲଂକାର ଶାସ୍ତ୍ର ଉପରେ ଭାରତରେ ବହୁ ଗ୍ରନ୍ଥ ଲେଖା ଯାଇଥିଲା। ପଣ୍ଡିତମାନେ ଅନୁମାନ କରନ୍ତି, ବର୍ତ୍ତମାନ ସେମାନେ ଗବେଷଣା କରି ଯେଉଁସବୁ ଅଲଂକାର ଗ୍ରନ୍ଥର ପୁନରୁଦ୍ଧାର କରୁଛନ୍ତି, ସେତକ ବୋଧହୁଏ ସମଗ୍ର ଗ୍ରନ୍ଥମାଳାର ଏକ କ୍ଷୁଦ୍ର ଅଂଶ ମାତ୍ର। ପୁଣି ଯେଉଁ ସବୁ ଗ୍ରନ୍ଥର ଅସ୍ତିତ୍ୱ ପ୍ରମାଣିତ ହୋଇଛି, ସେ ସବୁ ପ୍ରକୃତରେ କୌଣସିଠାରେ ଥିବା ଏ ପର୍ଯ୍ୟନ୍ତ ଜଣା ଯାଇନାହିଁ। ସମସାମୟିକ ବା ପରବର୍ତ୍ତୀ ଲେଖକମାନଙ୍କ ଗ୍ରନ୍ଥରେ ଉଦ୍ଧୃତ ହୋଇଥିବା ଅଂଶମାନଙ୍କରୁ ବହୁ ଲେଖକ ଓ ବହୁ ଗ୍ରନ୍ଥର ଜ୍ୱଳନ୍ତ ପ୍ରମାଣ ମିଳୁଛି। ଏହାଛଡ଼ା ଅଶେଷ ଯତ୍ନରେ ଅନୁସନ୍ଧିତ୍ସୁମାନଙ୍କର ହସ୍ତଗତ ହୋଇଥିବା ଅନେକ ଗ୍ରନ୍ଥ ଅପୂର୍ଣ୍ଣ, ନାନା ପ୍ରକାର ତ୍ରୁଟି ଓ ଅଶୁଦ୍ଧିରେ ଦୂଷିତ ଏବଂ ଗ୍ରନ୍ଥ ତଥା କବିଙ୍କ ଜୀବନକାଳ ସମ୍ପର୍କରେ ଭ୍ରାନ୍ତ ଓ ସନ୍ଦେହର ଜନକ। ତଥାପି ଏ ସବୁ ଭାରତରେ ଅଲଂକାରକଳା ଓ ଅଲଂକାର ଚର୍ଚ୍ଚାର ମୂକସାକ୍ଷୀ।

ହୃଦେ ଅମର କୌତୂହଳ ଉଦ୍ଦୀପନ କରେ । ଅନୁସନ୍ଧାନରୁ ଜଣା
ଯାଇଛି, ଅଳଂକାର ଗ୍ରନ୍ଥର ସଂଖ୍ୟା ପାଞ୍ଚଶହରୁ ଊଣ ନହେଁ ।
ଲେଖକ ଦୃଷ୍ଟିରୁ ଉକ୍ତ ଗ୍ରନ୍ଥମାନଙ୍କୁ ଦୁଇ ଭାଗରେ ବିଭକ୍ତ କରି-
ଯାଇପାରେ, ଯଥା :—ମୌଳିକ ଗ୍ରନ୍ଥ ଓ ସେମାନଙ୍କ ଟୀକା ।
ଟୀକାର ବାହୁଳତାରୁ ଅନୁମିତ ହୁଏ, ପଣ୍ଡିତମାନେ ମୌଳିକ-ଗ୍ରନ୍ଥ-
ରଚନା ଅପେକ୍ଷା ଲବ୍ଧ-ପ୍ରତିଷ୍ଠ ଗ୍ରନ୍ଥମାନଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଟୀକା
ଲେଖିବାକୁ ବେଶୀ ଭଲ ପାଉଥିଲେ । ଏ ମୁଦ୍ରାଯନ୍ତ୍ର ଯୁଗରେ
ଉଲ୍ଲିଖିତ ୫୦୦ ଗ୍ରନ୍ଥ ଲାଗି ଭାରତ ନିଜକୁ ଗୌରବାନ୍ୱିତ ମନେ
କରିବା ଯେ କେଡ଼େ ତୁଚ୍ଛ, କେତେ ନଗଣ୍ୟ ପରି ଜଣାଯାଏ,
ତାହା ବ୍ୟକ୍ତ କରିବାକୁ ଅପର ଭାଷା ନାହିଁ । ଆଧୁନିକ ଜଗତରେ
ପ୍ରତିଦିନ ଗୋଟିଏ ଗୋଟିଏ ବିଷୟରେ (Subject ଶହ ଶହ,
ସହସ୍ର ସହସ୍ର ବହି ପ୍ରକାଶ ପାଉଥିବାବେଳେ ଅନ୍ୟୁନ ଦୁଇ ହଜାର
ବର୍ଷ ମଧ୍ୟରେ ୫୦୦ ଗ୍ରନ୍ଥର ରଚନା ଯେ ଉପରୁ ଏତେ ଗର୍ବ କରିବାର
ଜିନିଷ, ତାହା ବିଂଶ ଶତାବ୍ଦୀର ମାନବ କଳ୍ପନା ସ୍ପର୍ଶ କରି ପାରିବ
ନାହିଁ । କିନ୍ତୁ ଗୋଟିଏ ମାପକାଠିରେ ସମସ୍ତଙ୍କୁ ମାପି ବସିଲେ
ବାତୁଳତାର ବହିଃ ପ୍ରକାଶ ହେବ ସିନା, ପଦାର୍ଥମାନଙ୍କର ବାସ୍ତବ
ମୂଲ୍ୟ କମିଯିବ ନାହିଁ । ଦେଶକାଳ ପାତ୍ର ଦୃଷ୍ଟିରୁ ଯେ
କୌଣସି ବିଷୟର ଆଲୋଚନା କରିବା ସମୀଚୀନ । ସମସାମୟିକ
ସାହିତ୍ୟର ତୁଳନାରେ ପ୍ରାଚୀନ ତଥା ମଧ୍ୟ ଯୁଗୀନ ଭାରତ ଓ ଅନ୍ୟ
ଯେ କୌଣସି ଦେଶ ମଧ୍ୟରେ ଆକାଶ ପାତାଳ ପ୍ରଭେଦ
ଦେଖାଯାଏ । ଅଙ୍କ ଦୁଏଛ ପାଶ୍ଚାତ୍ୟ ଶିକ୍ଷାଲୋକିତ ଓ ପାଶ୍ଚାତ୍ୟ
ସଭ୍ୟତାର ବହୁବିବରଣରେ ମୁଗ୍ଧ ଯୁବଗୋଷ୍ଠୀମାନେ ମୁଦ୍ରାଯନ୍ତ୍ର ନ
ଥିବା ଯୁଗରେ, କେବଳ ଅଳଂକାର ଶାସ୍ତ୍ର ଉପରେ ଏତେ ଗ୍ରନ୍ଥ
ଦେଖି ଚମତ୍କୃତ ହୋଇ ନ ପାରନ୍ତି, କିନ୍ତୁ ବୈଦେଶିକ ପଣ୍ଡିତ-
ମାନେ ଏ ବିଷୟରେ ଚିନ୍ତା କରି ସ୍ତମ୍ଭିତ ହୋଇ ଯାଉଛନ୍ତି ।

ଅଳଙ୍କାର ଗ୍ରନ୍ଥମାନଙ୍କର ସଂଖ୍ୟା ନିରୂପଣ କଲାବେଳେ ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ । କେଉଁଠାରେ ଜଣେ ଗ୍ରନ୍ଥକାରଙ୍କ ନାମ ଓ ଅନ୍ୟ କେଉଁଠାରେ କେବଳ ବୋଧହୁଏ ତାଙ୍କ ଗ୍ରନ୍ଥର ନାମ ପରବର୍ତ୍ତୀ ଗ୍ରନ୍ଥମାନଙ୍କରେ ଉଦ୍ଧାର କରାଯାଇ ଥିବାରୁ ବହୁ ସ୍ଥଳରେ ସନ୍ଦେହ ହୁଏ, ଲେଖକଙ୍କ ସହିତ 'ଗ୍ରନ୍ଥ' ନାମଟିର କିଛି ସମ୍ବନ୍ଧ ଅଛି କି ନାହିଁ । ସୁତରାଂ ଲେଖକଙ୍କ ନାମୋଲ୍ଲେଖରୁ ସେ ଜଣେ ଏବଂ ତାଙ୍କ ଗ୍ରନ୍ଥଟିର କେବଳ ନାମୋଲ୍ଲେଖ ହୋଇଥିବାରୁ ଉକ୍ତ ଗ୍ରନ୍ଥର ଲେଖକ ଅନ୍ୟ କେହି ଜଣେ, ଏପରି ପ୍ରତୀତ ହୁଏ । ସଂସ୍କୃତ ସାହିତ୍ୟର ଏପରି କେତେଗୋଟି ପ୍ରସିଦ୍ଧ ଉଦାହରଣ ପ୍ରତି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରାଯାଇ ପାରେ । ବର୍ତ୍ତମାନ 'ଅମର କୋଷ'ର ପ୍ରକୃତ ନାମ ହେଉଛି, 'ନାମ ଲିଙ୍ଗାନୁଶାସନ' ଏବଂ 'ମାଧବନିଦାନ' ନାମରେ ଖ୍ୟାତି ଲାଭ କରିଥିବା ଗ୍ରନ୍ଥଟିର ନାମ ହେଉଛି 'ରୋଗବିନିଶ୍ଚୟ' । ବର୍ତ୍ତମାନ ଏ ଦୁଇଟି ଗ୍ରନ୍ଥ ପୂର୍ବ ଭଳି ଅମର ହସ୍ତଗତ ହୋଇଥିବାରୁ ସନ୍ଦେହ ନିରାକରଣ କରିବାରେ ବିଶେଷ ପ୍ରତିବନ୍ଧକ ରହୁ ନାହିଁ । କିନ୍ତୁ ଗୋଟିଏ କଥା ଏଠାରେ କହିବା ଆବଶ୍ୟକ ଯେ ବହୁ ଶିକ୍ଷିତଙ୍କର ଭୁଲ ଧାରଣା 'ଅମରକୋଷ' ଏବଂ 'ନାମଲିଙ୍ଗାନୁଶାସନ' ଗୋଟିଏ ଗ୍ରନ୍ଥ ନୁହେଁ । ସେହିପରି 'ମାଧବନିଦାନ' ଓ 'ରୋଗବିନିଶ୍ଚୟ'ର ନାମ ଉଲ୍ଲେଖ କଲେ ସାଧାରଣତଃ ସେ ଦୁଇଟି ମଧ୍ୟରେ ଥିବା ଅବିଚ୍ଛେଦ୍ୟ, ଏପରି କି ଅଦ୍ୱୈତ ସମ୍ବନ୍ଧ ସ୍ଥିର କରିବା ଏକ ଭୟଙ୍କର କଷ୍ଟସାଧ୍ୟ ବା ଅସମ୍ଭବ କଥା । ଠିକ୍ ଏହିପରି ଆଜି ଅନେକ-ଗ୍ରନ୍ଥର ନାମ ବା କବିଙ୍କ ନାମ ଆମେ ଅନ୍ୟ ପରବର୍ତ୍ତୀ ଗ୍ରନ୍ଥରୁ ଜାଣି ପାରୁଥିବାରୁ, କବି ଓ ଗ୍ରନ୍ଥର ସମ୍ବନ୍ଧ ନିରୂପଣ କରିବା ବଡ଼ ପ୍ରମାଦସଂକୁଳ ହୋଇ ପଡ଼ୁଛି । ଧାରାବାହିକ ଇତି-

ଭାଷର ଅଭାବରେ ଏପରି ଭ୍ରାନ୍ତି ଘଟିବା ଏକ ସାଧାରଣ କଥା । ଗୀତଗୋବିନ୍ଦକାର ଜୟଦେବ ଓ ଜୟଦେବ ପୀୟୂଷବର୍ଷ ଜଣେ ନା ଦୁଇଜଣ, ଏ ବିଷୟରେ ପଣ୍ଡିତମାନଙ୍କ ମଧ୍ୟରେ ମତଭେଦ ଦେଖାଯାଏ । ଅଳଙ୍କାରିକ ବେଙ୍କଟ ନାରାୟଣ ଦୀକ୍ଷିତଙ୍କର ନାମରେ 'ଶୃଙ୍ଗାରସାର' ଓ 'ଶୃଙ୍ଗାରସାରାବଳୀ' ନାମକ ଦୁଇଖଣ୍ଡି ଗ୍ରନ୍ଥର ଯେଉଁ ସୂଚନା କେତେକ ଅଳଙ୍କାର ଗ୍ରନ୍ଥରେ ମିଳେ, ତାହାର ତଥ୍ୟ ନିରୂପଣ କରିବା ସହଜ ନୁହେ । କେତେକଙ୍କ ମତରେ ଏ ଦୁଇଟି ଭିନ୍ନ ଭିନ୍ନ ଗ୍ରନ୍ଥ । ଅନ୍ୟ କେତେକ କହନ୍ତି, ଗୋଟିଏ ଗ୍ରନ୍ଥ ବହୁ-ସାମଞ୍ଜସ୍ୟ ଥିବା ଦୁଇଟି ନାମରେ ପରିଚିତ ହୋଇଛି ମାତ୍ର । 'ସାହିତ୍ୟ-ଦର୍ପଣ' (କଳିଙ୍ଗୀୟ କବି ବିଶ୍ୱନାଥଙ୍କ ପ୍ରସିଦ୍ଧ ଅଳଂକାର ଗ୍ରନ୍ଥ) ଯେପରି ଦର୍ପଣ ବା ସାହିତ୍ୟ ଦର୍ପଣ ନାମରେ ଅଭିହିତ ହୋଇଥାଏ, ସେହିପରି ଗୋଟିଏ ଗ୍ରନ୍ଥ ଭିନ୍ନ ଭିନ୍ନ ସମୟରେ ବିଭିନ୍ନ କବିଙ୍କ ଦ୍ୱାରା ଅବିକଳ ପୂର୍ଣ୍ଣ ନାମ ବଦଳରେ ଟିକିଏ ଭିନ୍ନ ଭାବରେ ମଧ୍ୟ କଥିତ ହୋଇପାରେ । ପ୍ରସିଦ୍ଧ ଟୀକାକାର କେମୀ-ସାହାଙ୍କ ରଚିତ ସାହିତ୍ୟ ସୁଧା, ତାଙ୍କର ଗ୍ରନ୍ଥରୂପେ ବହୁ ସ୍ଥଳରେ ଉଲ୍ଲିଖିତ ହୋଇଥିବା 'କାବ୍ୟ-ସୁଧା' ଠାରୁ ଭିନ୍ନ କି ନୁହେ, ଜାଣିବା କଷ୍ଟକର । ସେହିପରି ସୋମେଶ୍ୱର ଏବଂ ଗଙ୍ଗାଶେଖର (ଏ ଦୁହେଁ ଯଥାକ୍ରମେ କାବ୍ୟ ପ୍ରକାଶର ଟୀକା ଓ କାବ୍ୟ ମୀମାଂ-ସାର ଲେଖକ) ଉଭୟେ ଯେଉଁ ବାକ୍‌ପତିରାଜ ଓ ବାକ୍‌ପତିରାଜଙ୍କର ନାମ ଯଥାକ୍ରମେ ଉଲ୍ଲେଖ କରିଛନ୍ତି, ସେ କଣ ଜଣେ ନା ଦୁଇ-ଜଣ, ଏ ପର୍ଯ୍ୟନ୍ତ ସ୍ଥିର କରାଯାଇ ପାରି ନାହିଁ ।

କେବଳ ସେତିକି ନୁହେ । ଗୋଟିଏ ଗ୍ରନ୍ଥର ଆପାତତଃ ଅନେକ ନାଁ ଥିବା ପରି ପ୍ରତୀତ ହୁଏ । ଏହାର କାରଣ, ଭିନ୍ନ

ଭିନ୍ନ ଯୁଗରେ ଏବଂ ଏ ବିଶାଳ ଭାରତର ଭିନ୍ନ ଭିନ୍ନ ପ୍ରଦେଶରେ ବହୁନ କର୍ତ୍ତା ନାନା ଛନ୍ଦ ଶ୍ରେଣି ଗ୍ରନ୍ଥର ଯେଉଁ ନାମ ଦେଇଛନ୍ତି, ତହିଁରେ ପୂର୍ବାପର ସମତା ରକ୍ଷଣ । ସମାନ ନାମ ଥିବା ଯେଉଁ ଗ୍ରନ୍ଥ ମିଳିଛି, ସେ ସବୁର କବି ଓ ସେହି ନାମଧାରୀ ଅନ୍ୟାନ୍ୟ ଗ୍ରନ୍ଥଠାରୁ ପ୍ରତ୍ୟେକଟିର ପ୍ରଭେଦ ନିରୂପିତ ହୋଇ ପାରିଛି । ଯେଉଁଠାରେ ମୂଳଗ୍ରନ୍ଥ ନ ମିଳି କେବଳ ନାମ ମିଳିଛି, ସେଠାରେ ଅନୁସନ୍ଧିତ୍ସୁର ପ୍ରଗତିପଥରେ ସନ୍ଦେହ-କଣ୍ଟକର ସଂଖ୍ୟା ବହୁ ଗୁଣିତ ହୋଇ ଯାଇଛି । ଦୃଷ୍ଟାନ୍ତ ସ୍ୱରୂପ, ଶଙ୍କର ମିଶ୍ର, ବାଗ୍‌ଭଟ ଓ ଭାନୁଦତ୍ତ—ଏ ତିନିଜଣ ଲେଖକ ଯେଉଁ ସ୍ୱତନ୍ତ୍ର ତିନି ଗୋଟି ଗ୍ରନ୍ଥ ଲେଖିଛନ୍ତି, ସେସବୁର ନାମ ଅଳଂକାରତିଳକ । ଭବକଣ୍ଠପୁର, କଲ୍ୟାଣ ସୁବ୍ରହ୍ମଣ୍ୟ ଓ ଶଙ୍ଖେଶ୍ୱର—ଏମାନେ ପ୍ରତ୍ୟେକେ ଅଳଂକାର-କୌସ୍ତୁଭ ନାମରେ ଖଣ୍ଡି ୧ ୨ ଗ୍ରନ୍ଥ ରଚନା କରିଛନ୍ତି । ରତ୍ନପାଣି, ଗୁଜଚୂଡ଼ାମଣି ଦୀକ୍ଷିତ, ଶ୍ରୀନିବାସ ଦୀକ୍ଷିତ, ମନୋଧର ଓ ମଧୁମତି ଗଣେଶ—ଏମାନେ ପ୍ରତ୍ୟେକେ ଗୋଟିଏ ଗୋଟିଏ କାବ୍ୟ-ଦର୍ପଣ ନାମକ ଅଳଂକାର ଗ୍ରନ୍ଥର ପ୍ରଣେତା । ରସତରଙ୍ଗିଣୀ ଉପରେ ( ଭାନୁଦତ୍ତଙ୍କ ) ବେଣୀଦତ୍ତ ଯେଉଁ ଟୀକା ଲେଖିଛନ୍ତି, କୁବଳୟାନନ୍ଦ ( ଅପ୍ପୟ ଦୀକ୍ଷିତଙ୍କ ) ଉପରେ ଗଙ୍ଗାଧର ଯେଉଁ ଟୀକା ଲେଖିଛନ୍ତି ଓ ରସମଞ୍ଜରୀ ( ଭାନୁଦତ୍ତଙ୍କ ) ଉପରେ ଗୋପାଳଭଟ୍ଟ ଯେଉଁ ଟୀକା ଲେଖିଛନ୍ତି ସେସବୁ ଗ୍ରନ୍ଥର ନାମ ହୋଇଅଛି ରସିକରଞ୍ଜନୀ । ପୂର୍ଣ୍ଣ ଗ୍ରନ୍ଥ ନ ମିଳିବା ସ୍ଥଳେ କେବଳ ଗ୍ରନ୍ଥର ନାମରୁ ଗ୍ରନ୍ଥକାର ଓ ତାଙ୍କର ସମୟ ନିର୍ଣ୍ଣୟ କରିବା ଯେ କେଡ଼େ କଷ୍ଟକର, ଲିଖିତ ଦୃଷ୍ଟାନ୍ତ ଗୁଡ଼ିକରୁ ବେଶ ବୁଝି ହେବ ।

ଏଥିପୂର୍ବେ କୁହାଯାଇଛି, ମୂଳଗ୍ରନ୍ଥ ଓ ଟୀକା ଭେଦରେ ଅଳଂକାର ଗ୍ରନ୍ଥ ଦୁଇ ପ୍ରକାର । ଟୀକା ମଧ୍ୟ ଦୁଇ ଭାଗରେ ବିଭକ୍ତ

ଯଥା, କୌଣସି ମୂଳଗ୍ରନ୍ଥ ଉପରେ ଟୀକା ଓ ଉକ୍ତ ଟୀକା ଉପରେ ପୁଣି ଏକ ଟୀକା । ଜଣେ ପଣ୍ଡିତଙ୍କର ଏକ ମୂଳଗ୍ରନ୍ଥର ତତ୍ତ୍ୱ ବ୍ୟାଖ୍ୟାନ ଲାଗି ଅନ୍ୟ ଜଣେ ପଣ୍ଡିତ ଯେଉଁ ଟୀକା ଲେଖୁଥିଲେ, ତା ଉପରେ କୌଣସି ମତବାଦର ପ୍ରତିଷ୍ଠା ଲାଗି ହେଉ ବା ସମ-ସାମୟିକ ପରିସ୍ଥିତିର ପ୍ରଭାବରେ ହେଉ, ଆଉ ଏକ ଟୀକା ଲେଖିବା ଆବଶ୍ୟକ ହେଉଥିଲା । ଉଦାହରଣ ସ୍ୱରୂପ କୁହାଯାଇ ପାରେ, ମମ୍ମଟଙ୍କ କାବ୍ୟ ପ୍ରକାଶ ଉପରେ ଯେଉଁ ଷାଠିଏରୁ ଅଧିକ ଟୀକା ଦେଖାଯାଏ, ତହିଁ ମଧ୍ୟରୁ ଗୋବିନ୍ଦ ଠକ୍କୁରଙ୍କ ପ୍ରଦୀପଟୀକା ଅନ୍ୟତମ । ଉକ୍ତ ପ୍ରଦୀପ ଟୀକା ଉପରେ ବୈଦ୍ୟନାଥ ପ୍ରଦୀପପ୍ରଭା ନାମକ ଓ ନାଗେଶଭଟ୍ଟ ପ୍ରଦୀପୋଦ୍ୟୋତ ନାମକ ଅନ୍ୟ ଏକ ଟୀକା ଲେଖିଥିଲେ । ଅନ୍ୟ ଏକ ବିଖ୍ୟାତ ଗ୍ରନ୍ଥ 'ଧ୍ୱନ୍ୟାଲୋକ' ଉପରେ ଅଭିନବ ଗୁପ୍ତ ଯେଉଁ ଲୋଚନ ନାମରେ ଟୀକା ଲେଖିଥିଲେ, ତାହା ଉପରେ "ଲୋଚନ ବ୍ୟାଖ୍ୟା କୌମୁଦୀ" ନାମକ ଅନ୍ୟ ଏକ ଟୀକା ପରମେଶ୍ୱରସୂରି ଲେଖିଥିଲେ । ଆଶା କରାଯାଏ, ଗବେଷଣାର ପ୍ରସାର ସଙ୍ଗେ ସଙ୍ଗେ ଏପରି ଅନେକ କଥା ବିଦ୍ୱତ୍ସମାଜରେ ଆତ୍ମ ପ୍ରକାଶ କରିବ ।

ପ୍ରାଚୀନ ଭାରତରେ ରାଜାମାନଙ୍କର ସଂସ୍କୃତ ସାହିତ୍ୟ ପ୍ରତି ପ୍ରଗାଢ଼ ଆସ୍ଥା ଓ ପ୍ରବଳ ଆଗ୍ରହ ଥିଲା । ବିକ୍ରମାଦିତ୍ୟଙ୍କ ନବରତ୍ନ କେବଳ କଳ୍ପନା ପ୍ରସୂତ ହୁଅନ୍ତୁ ବା ସତ୍ୟ ଉପରେ ପ୍ରତିଷ୍ଠିତ ହୁଅନ୍ତୁ, ପଣ୍ଡିତମାନଙ୍କର ଶାସ୍ତ୍ର ଚର୍ଚ୍ଚା ତଥା ରାଜାଙ୍କର ବିଦ୍ୟା ବିଳାସ ଯେ ଏଥିରେ ଓତପ୍ରୋତ ଭାବରେ ଜଡ଼ିତ, ଏହା କହିବା ଅନାବଶ୍ୟକ । ନିଜ ଗୁରୁଙ୍କ ସମାଲୋଚନାକାରୀ ଜଣେ ପଣ୍ଡିତଙ୍କୁ ଖଣ୍ଡନ କରିବା ଲାଗି ପଣ୍ଡିତ-ଶିଷ୍ୟ ଏକ ଶବ୍ଦପୂର୍ଣ୍ଣ ଗ୍ରନ୍ଥ ଲେଖିଥିଲେ ଏବଂ ଗୁରୁ-

ଦ୍ରୋହୀର ଗର୍ବ ଖର୍ବ କରିବ ବୋଲି ପ୍ରତିଜ୍ଞା କରିଥିଲେ । "ଶ୍ୟାମିଗର୍ବଂ ଗୁରୁଦ୍ରୋହାମ୍"ରୁ ଗୁରୁଙ୍କ ମତ ଖଣ୍ଡନ ଓ ସମାଲୋଚକର ମତ ଖଣ୍ଡନର ଭାବ ସ୍ପଷ୍ଟ ପ୍ରକାଶ ପାଏ * । ରାଜସଭାରେ ପଣ୍ଡିତମାନଙ୍କର ପରସ୍ପର ମଧ୍ୟ ଖଣ୍ଡନ ମଣ୍ଡନ କାର୍ଯ୍ୟ ଚାଲିଥିଲା, ସେ ବିଷୟରେ ଅନେକ କିମ୍ବଦନ୍ତୀ ଶୁଣାଯାଏ । ଅଳଂକାର ଜଗତରେ ଏପରି ବାଦ ବିବାଦ ହେଉଥିଲା କି ନାହିଁ, ଜାଣିବାକୁ ହେଲେ କିମ୍ବଦନ୍ତୀ ଉପରେ ନିର୍ଭର କରିବା ଦରକାର ନାହିଁ । ଏ ତଥ୍ୟର ଜୀବନ୍ତ ନିଦର୍ଶନ ରୂପେ ସେମାନଙ୍କ ଅଳଂକାର ଗ୍ରନ୍ଥ ଅଦ୍ୟାପି ବିଦ୍ୟମାନ ଏବଂ ଗ୍ରନ୍ଥଗୁଡ଼ିକର ନାମକରଣ ଏତେ ସୁନ୍ଦର ହୋଇଛି ଯେ, ବିନା ପରିଶୀଳନରେ ଗ୍ରନ୍ଥଗର୍ଭିତ ବିଷୟ ବସ୍ତୁର ସ୍ଥୂଳ ସ୍ୱରୂପ ଜାଣିବା ଆଦୌ କଷ୍ଟକର ହୁଏ ନାହିଁ । ଶତାଧିକ ଗ୍ରନ୍ଥର ପ୍ରଣେତା ଦକ୍ଷିଣୀ ପଣ୍ଡିତ ଅପ୍ପୟ୍ୟ ଦୀକ୍ଷିତ 'ଚିତ୍ର ମୀମାଂସା' ନାମକ ଏକ ଅଳଂକାର ଗ୍ରନ୍ଥ ଲେଖିଥିଲେ । ତାଙ୍କର ସମସାମୟିକ [illegible] ପ୍ରତିଦ୍ୱନ୍ଦ୍ୱୀ ପଣ୍ଡିତ,

---

* ପ୍ରକ୍ରିୟା କୌମୁଦୀକାର ଆନ୍ଧ୍ର ରାମଚନ୍ଦ୍ରାଚାର୍ଯ୍ୟଙ୍କର ନାତି = ଶେଷ ଶ୍ରୀକୃଷ୍ଣଙ୍କ ଶିଷ୍ୟ = ଭଟ୍ଟୋଜିଦୀକ୍ଷିତ ସ୍ୱପ୍ରଣୀତ ସିଦ୍ଧାନ୍ତ କୌମୁଦୀମୂଳରେ ଗୁରୁଙ୍କ ( ଶେଷ ଶ୍ରୀକୃଷ୍ଣଙ୍କ ) ପ୍ରଣୀତ 'ପ୍ରକାଶ' ନାମକ ପ୍ରକ୍ରିୟା କୌମୁଦୀ ଟୀକାର ଖଣ୍ଡନ କରିଥିଲେ । ପରେ ଶେଷ ଶ୍ରୀକୃଷ୍ଣଙ୍କ ପୁଅ ବୀରେଶ୍ୱରଙ୍କ ଠାରୁ ପଣ୍ଡିତରାଜ ଜଗନ୍ନାଥ ସମସ୍ତ ବିଦ୍ୟା ଅଧ୍ୟୟନ କରି ଭଟ୍ଟୋଜିଦୀକ୍ଷିତଙ୍କ ସ୍ୱପ୍ରଣୀତ ସିଦ୍ଧାନ୍ତ କୌମୁଦୀ ଓ ତାହାର ମନୋରମା ଟୀକାରେ ନିଜ ଗୁରୁଙ୍କ ପ୍ରକାଶ ଟୀକାର ଖଣ୍ଡନ ଦେଖି ଗୁରୁଦ୍ରୋହୀର ମତ ଖଣ୍ଡନ ଲାଗି 'ମନୋରମା' ଟୀକାର ଖଣ୍ଡନ କରି [illegible] 'ମନୋରମାକୁଚମର୍ଦ୍ଦନ' ନାମକ ଟୀକା ଲେଖିଲେ ଏବଂ ଉକ୍ତ ଗ୍ରନ୍ଥ ମୂଳରେ ପ୍ରତିଜ୍ଞା କଲେ, 'ଗୁରୁଦ୍ରୋହୀର ଗର୍ବ ଖର୍ବ କରୁଛି' ।

ପଣ୍ଡିତରାଜ ଜଗନ୍ନାଥ ଦୀକ୍ଷିତଙ୍କ ମତ ଖଣ୍ଡନ କରି "ଚିତ୍ରମୀମାଂସା-ଖଣ୍ଡନ" ନାମକ ଅନ୍ୟ ଏକ ଗ୍ରନ୍ଥ ପ୍ରଣୟନ କଲେ । ତାପରେ ଉକ୍ତ ଦୀକ୍ଷିତଙ୍କ ଜଣେ ବଂଶଧର ନୀଳକଣ୍ଠ ଦୀକ୍ଷିତ 'ପଣ୍ଡିତରାଜ ଜଗନ୍ନାଥ ଦର୍ଶାଇଥିବା ଚିତ୍ରମୀମାଂସାର ଦୋଷଗୁଡ଼ିକ ଅମୂଳକ ବୋଲି ପ୍ରମାଣ କରିବାକୁ ଯାଇ ଦୀକ୍ଷିତଙ୍କର ମତ ସମର୍ଥନ ଓ ଜଗନ୍ନାଥଙ୍କ ମତ ଖଣ୍ଡନ କରି 'ଚିତ୍ରମୀମାଂସା ଦୋଷଧିକ୍କାର' ନାମକ ଅନ୍ୟ ଏକ ଗ୍ରନ୍ଥ ରଚନା କରିଥିଲେ । ବାସ୍ତବରେ ଏ ଧରଣର ସାହିତ୍ୟ ଚର୍ଚ୍ଚା ଫଳରେ ଭାରତ ଦିନେ କାବ୍ୟ-ହିମାଳୟର ଗୌରୀଶଙ୍କର ଶୀର୍ଷରେ ଦଣ୍ଡାୟମାନ ରହି ସଗର୍ବରେ ବିଜୟ ଦୁନ୍ଦୁଭି ବଜାଇଥିଲା ।

ଅଳଂକାର ଗ୍ରନ୍ଥଗୁଡ଼ିକର ଆଲୋଚନା କରିବା ଆଗରୁ ଏବଂ ଆଳଂକାରିକ ବିଷୟ ବସ୍ତୁର ଅବତାରଣା କରିବା ପୂର୍ବରୁ ଜାଣିବା ଆବଶ୍ୟକ, କେଉଁ କେଉଁ ଅଳଂକାର ଗ୍ରନ୍ଥ ଭାରତରେ ପ୍ରସିଦ୍ଧି ଲାଭ କରିଥିଲା ଏବଂ ଅଦ୍ୟାପି ସର୍ବସାଧାରଣରେ ପଣ୍ଡିତ ସମାଜରେ ଆଦୃତ ହେଉଛି । ତା ପରେ ଏହି ପ୍ରସିଦ୍ଧ ଗ୍ରନ୍ଥମାନଙ୍କୁ ଛାଡ଼ିଦେଲେ ଅନ୍ୟ ଯେଉଁ ସବୁ ଗ୍ରନ୍ଥ ଥିବା କଥା ଅନ୍ୟତ୍ର ଜଣାଯାଇଛି, ସେ ସବୁର ନାମୋଲ୍ଲେଖ ଓ ଲେଖକଙ୍କର ନାମ ମଧ୍ୟ ଜଣାଇବା ଦରକାର । ନିମ୍ନରେ ଭାରତ ବିଖ୍ୟାତ ଏବଂ ପଣ୍ଡିତସମାଜରେ ବ୍ୟାପକଭାବେ ସମ୍ମାନିତ ଗ୍ରନ୍ଥ ତଥା ଗ୍ରନ୍ଥକାରଙ୍କ ନାମ ପ୍ରଦତ୍ତ ହେଲା ।

| ଗ୍ରନ୍ଥର ନାମ | ଗ୍ରନ୍ଥକାରଙ୍କ ନାମ |
|---|---|
| ନାଟ୍ୟଶାସ୍ତ୍ର | ଭରତ |
| କାବ୍ୟାଳଂକାର | ଭାମହ |
| କାବ୍ୟାଦର୍ଶ | ଦଣ୍ଡୀ |

| ଗ୍ରନ୍ଥର ନାମ | ଗ୍ରନ୍ଥକାରଙ୍କ ନାମ |
|---|---|
| ଅଲଂକାର ସାରସଂଗ୍ରହ | ଉଦ୍‌ଭଟ |
| କାବ୍ୟାଲଂକାର ସୂତ୍ର | ବାମନ |
| କାବ୍ୟାଲଂକାର | ରୁଦ୍ରଟ |
| ଧ୍ୱନ୍ୟାଲୋକ | ଆନନ୍ଦବର୍ଦ୍ଧନ |
| କାବ୍ୟମୀମାଂସା | ରାଜଶେଖର |
| ବକ୍ରୋକ୍ତିଜୀବିତ | କୁନ୍ତକ |
| ଦଶରୂପକ | ଧନଞ୍ଜୟ |
| ସରସ୍ୱତୀ କଣ୍ଠାଭରଣ | ଭୋଜ |
| କାବ୍ୟ ପ୍ରକାଶ | ମମ୍ମଟ |
| ଅଲଂକାର ସର୍ବସ୍ୱ | ରୁଯ୍ୟକ |
| ବାଗ୍‌ଭଟାଲଂକାର | ବାଗ୍‌ଭଟ |
| କାବ୍ୟାନୁଶାସନ | ହେମଚନ୍ଦ୍ର |
| ଚନ୍ଦ୍ରାଲୋକ | ଜୟଦେବ |
| କାବ୍ୟାନୁଶାସନ | ବାଗ୍‌ଭଟ |
| ସାହିତ୍ୟ ଦର୍ପଣ | ବିଶ୍ୱନାଥ |
| କୁବଳୟାନନ୍ଦ | ଅପ୍ପୟଦୀକ୍ଷିତ |
| ଶବ୍ଦମୀମାଂସା | ,, |
| ରସଗଙ୍ଗାଧର | ଜଗନ୍ନାଥ ପଣ୍ଡିତରାଜ |

ବର୍ତ୍ତମାନ ଯେଉଁ ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ନାମ ତଳେ ଦିଆଯିବ, ସେ ମଧ୍ୟରୁ ସବୁଗ୍ରନ୍ଥ ପୂର୍ବରୁ ଦେଖିବାକୁ ମିଳେ ନାହିଁ ।

ଫଳରେ ସବୁ ଲେଖକଙ୍କ ବିଷୟରେ ଯଥେଷ୍ଟ ବିବରଣୀ ଦେବା ସମ୍ଭବ ନୁହେଁ । ଅନୁସନ୍ଧିତ୍ସୁମାନେ ବହୁ ବର୍ଷ ଗବେଷଣା

କବି ଯେଉଁ ସବୁ ଗ୍ରନ୍ଥର ସନ୍ଧାନ ପାଇଛନ୍ତି, ତାହା କେବଳ ଏଠାରେ ପ୍ରଦତ୍ତ ହେଉଛି । କିନ୍ତୁ ଏଠାରେ ମନେ ରଖିବା ଉଚିତ, ଏ ଗ୍ରନ୍ଥ ମଧ୍ୟରେ ପ୍ରାୟଶଃ ଟୀକା ବା ଟୀକାର ଟୀକା ସ୍ଥାନ ପାଇ ନାହିଁ । ମୌଳିକ ଗ୍ରନ୍ଥ ଗୁଡ଼ିକୁ କେବଳ ଏଠାରେ ଉଲ୍ଲେଖ କରାଯାଇଛି । ପ୍ରଥମ କଥିତ ବିଖ୍ୟାତ ଗ୍ରନ୍ଥମାନଙ୍କର ଆଲୋଚନା ଏ ଗ୍ରନ୍ଥରେ ଦ୍ୱିତୀୟ ପରିଚ୍ଛେଦ ଛଡ଼ା ଅନ୍ୟଗୁଡ଼ିକରେ ଧାରାବାହିକ ରୂପେ କରାଯାଇଛି ଏବଂ ଉଲ୍ଲିଖିତ ଅନେକଗ୍ରନ୍ଥ ମଧ୍ୟ ଗ୍ରନ୍ଥ-ରଚନା-କାଳ ଅନୁସାରେ ସେ ଧାରାବାହିକ ଆଲୋଚନାରେ ସ୍ଥାନ ପାଇଛି ।

| ଗ୍ରନ୍ଥ | ଗ୍ରନ୍ଥକାର | ବିଶେଷବକ୍ତବ୍ୟ |
|---|---|---|
| ଔଚିତ୍ୟ ବିଚାରଚର୍ଚ୍ଚା | କ୍ଷେମେନ୍ଦ୍ର | |
| ରାମଚନ୍ଦ୍ର ଯଶୋଭୂଷଣ | କଟେଶ୍ୱର ଦୀକ୍ଷିତ | |
| କବିକଣ୍ଠାଭରଣ | କ୍ଷେମେନ୍ଦ୍ର | |
| କବି କଳ୍ପଲତା | ଦେବେଶ୍ୱର | ୧୧ଶ ଶତାବ୍ଦୀ |
| ” ” | ସ୍ୱଧର ଚୈତନ୍ୟ | |
| କବି କୌତୁକ | ବିଷ୍ଣୁଦାସ | |
| କାବ୍ୟ-ଚନ୍ଦ୍ରିକା | କବିଚନ୍ଦ୍ର | ୧୬ଶ ଶତାବ୍ଦୀ |
| କବିତାବତାର | ପୁରୁଷୋତ୍ତମ | |
| କବି ସମୟ କଲ୍ଲୋଳ | ଅନନ୍ତାର୍ଯ୍ୟ | |
| ଧ୍ୱନିଗାଥା ପଞ୍ଜିକା | ରତ୍ନାକର | |
| ରସମଞ୍ଜରୀ | ଲକ୍ଷ୍ମୀଧର | |
| ଯମକ ରତ୍ନାକର | ଶ୍ରୀବତ୍ସାଙ୍କ ମିଶ୍ର | |
| ନାଟ୍ୟ ପ୍ରଦୀପ | ସୁନ୍ଦର ମିଶ୍ର | |

| | | |
|---|---|---|
| ଶୃଙ୍ଗାରଲତା | ସୁଖଦେବ ମିଶ୍ର | |
| ରସୋଦଧି | ମୋହନ ଦାସ | |
| ସାହିତ୍ୟ ସଙ୍ଗ୍ରହ | ଶମ୍ଭୁ ଦାସ | |
| କାବ୍ୟଶିକ୍ଷା | ଗଙ୍ଗା ଦାସ | |
| ଭାଷାବିଭୂଷଣ | ଗୋପାଳ ଦାସ | |
| ଏକାବଳୀ | ବିଦ୍ୟାଧର | |
| ଅଳଂକାରୋଦାହରଣ | ଜୟରଥ | ୧୩ଶ ଶତାବ୍ଦୀ |
| କାବ୍ୟଚନ୍ଦ୍ରିକା | ରାମଚନ୍ଦ୍ର | |
| ପ୍ରସ୍ତାବ ଚିନ୍ତାମଣି | ଚନ୍ଦ୍ରଚୂଡ଼ | |
| ରସିକ ପ୍ରକାଶ | ଦେବନାଥ | |
| ଭରଣାବଲୀ | ଶଶଧର | |
| ଶୃଙ୍ଗାର ସାରଣୀ | ଶଙ୍ଖଧର | |
| ଶୃଙ୍ଗାରସାରୋଦଧି | ସୁଧାକର | |
| ଅଳଂକାର ରତ୍ନାକର | ଶୋଭାକର | } ଏଥିରେ ୧୦୭ଟି ସୂତ୍ର |
| ଅବନ୍ତୀ ସୁନ୍ଦରୀ | ରାଜଶେଖର | |
| ଅଳଂକାର ସମୁଦ୍‌ଗକ | ଶିବରାମ | ୧୮ଶ ଶତାବ୍ଦୀ |
| ରସ ଦୀର୍ଘିକା | ବିଦ୍ୟାରାମ | |
| ସାହିତ୍ୟ ସାର | ସୀତାରାମ | |
| ସାହିତ୍ୟ ସୁଧାସିନ୍ଧୁ | ବିଶ୍ୱନାଥ | ୧୭ଶ ଶତାବ୍ଦୀ |
| ରସରତ୍ନହାର | ଶିବରାମ ତ୍ରିପାଠୀ | |
| ଲକ୍ଷଣଦୀପିକା | ଗୌରୀ ନାର୍ଯ୍ୟ | |
| ଶବ୍ଦାର୍ଥ ଚିନ୍ତାମଣି | ଚିଦମ୍ବର କବି | |
| କର୍ପୂର ରସ ମଞ୍ଜରୀ | ବାଲ କବି | |

| | | |
|---|---|---|
| ନାୟିକା ଦର୍ପଣ | ରୂପଙ୍କର | |
| ଅଷ୍ଟନାୟିକା ଦର୍ପଣ | ଭଗବତ୍ କବି | |
| ସାହିତ୍ୟସାର | ଅଚ୍ୟୁତ ରାୟମୋଡକ | |
| ହୃଦୟ ଦର୍ପଣ | ଭଟ୍ଟନାୟକ | ୧୦ମ ଶତାବ୍ଦୀ |
| ଭଟ୍ଟି କାବ୍ୟ | ଭଟ୍ଟି | |
| ବ୍ୟକ୍ତି ବିବେକ | ମହିମଭଟ୍ଟ | |
| ରତ୍ନମାଳା | ଲକ୍ଷଣଭଟ୍ଟ | |
| କାବ୍ୟ ପରୀକ୍ଷା | ଶ୍ରୀବତ୍ସ ଲାଞ୍ଛନ ଭଟ୍ଟାଚାର୍ଯ୍ୟ | ୧୬ଶ ଶତାବ୍ଦୀ |
| କାବ୍ୟ ବିଳାସ | ଚିରଞ୍ଜୀବୀ ଭଟ୍ଟ | ଦୁଇଟେଗୋଟି ପଦ୍ମ-ଚ୍ଛନ୍ଦରେ ଲେଖା। |
| କାବ୍ୟ କୌତୁକ | ଭଟ୍ଟ ତୌତ | |
| ଅଳଂକାର ମଞ୍ଜୁଷା | ନେମକ୍ଷଭଟ୍ଟ | |
| ଅଭିଧାବୃତ୍ତିମାତୃକା | ମୁକୁଳଭଟ୍ଟ | ୧୦ମ ଶତାବ୍ଦୀ |
| ଅଳଂକାର କୌମୁଦୀ | ବଲ୍ଲଭଭଟ୍ଟ | |
| ଅଳଂକାର କୌସ୍ତୁଭ | ବେଙ୍କଟାଚାର୍ଯ୍ୟ | |
| ରସ ପ୍ରେକ୍ଷାମଞ୍ଜୁଷା | ବରଦାଚାର୍ଯ୍ୟ | |
| ସାହିତ୍ୟକଲ୍ଲୋଳିନୀ | ଭାଷ୍ୟକାରାଚାର୍ଯ୍ୟ | |
| ସାହିତ୍ୟ ଚିନ୍ତାମଣି | ବୀରନାରାୟଣ | |
| ଅଳଂକାର କୌସ୍ତୁଭ | ବିଦ୍ୟାଭୂଷଣ | |
| କାବ୍ୟ କୌମୁଦୀ | ରତ୍ନଭୂଷଣ | ୧୮ଶ ଶତାବ୍ଦୀ |
| ଅଳଂକାର ଚିନ୍ତାମଣି | ଅଜିତ୍ ସେନ | |
| ଉଜ୍ଜ୍ୱଳ ନୀଳମଣି | ରୂପଗୋସ୍ୱାମୀ | ୧୬ଶ ଶତାବ୍ଦୀ |
| ଅଳଂକାର ମଣିହାର | ସର୍ବକାଳସ୍ୱାମୀ | |
| ଅଳଂକାର ଶେଖର | କେଶବମିଶ୍ର | ୧୬ଶ ଶତାବ୍ଦୀ |

କମଳାକାଶ

| | |
|---|---|
| ଅଳଂକାର ତିଳକ | ଶ୍ରୀଭବମିଶ୍ର |
| କାବ୍ୟ ସ୍ମାରଙ୍ଗଗ୍ରନ୍ଥ | ଶ୍ରୀନିବାସ |
| ନାଟକ ଚନ୍ଦ୍ରିକା | ରୂପ ଗୋସ୍ୱାମୀ |
| ନାୟିକା ବର୍ଣ୍ଣନା | ରାମ ଶର୍ମା |
| ପରମାନ୍ଦ ବଟନାଦ | ଗୁଣନିଧି |
| ପଟେଜ କଳିକା | ଭାବ୍ୟରତ୍ନ |
| ସୌଭାଗ୍ୟକମ ଦୀପିକା | ——— ନବରସର ତତ୍ତ୍ୱର |
| ଶରଚନ୍ଦ୍ରିକା | ସୁବ୍ରହ୍ମଣ୍ୟଶାସ୍ତ୍ରୀ |
| ଶବ୍ଦମୀମାଂସାଖଣ୍ଡନ | ଜଗନ୍ନାଥ |
| ଶବ୍ଦମୀମାଂସାଦୋଷଧିକ୍କାର | ନୀଳକଣ୍ଠ |
| ରହସ୍ୟ ପ୍ରକାଶ | ଜଗଦୀଶତର୍କପଞ୍ଚାନନ |
| ବକ୍ରୋକ୍ତିକେଶ | ମଧୁମଭଟ୍ଟ |
| ଅଳଂକାର ସାରୋଦ୍ଧାର | ଭୀମ ସେନ — ୧୮ଶ ଶତାବ୍ଦୀ |
| ରସରତ୍ନାବଳୀ | ବୀରେଶ୍ୱର ପଣ୍ଡିତ |
| ବିଦଗ୍ଧ ମୁଖମଣ୍ଡନ ✓ | ଧର୍ମଦାସ |
| କାବ୍ୟକଳ୍ପଲତା | ଅମରସିଂହ { ଖ୍ରୀଷ୍ଟ ୧୩ଶ ଶତାବ୍ଦୀ ଏ ଛନ୍ଦ ଥିଲେ "କବି—ଶିକ୍ଷାବୃତ୍ତି" ଗ୍ରନ୍ଥର ଅନ୍ୟ ନାମ। |
| ସାହିତ୍ୟ ରତ୍ନାକର ✓ | ଧର୍ମ ସୁରି |
| ନାଟକ ଲକ୍ଷଣ | ପୁଣ୍ଡରୀକ |
| ନାଟ୍ୟ ଲୋଚନ | ତ୍ରିଲୋଚନାଚାର୍ଯ୍ୟ |
| ନାଟକ ମୀମାଂସା | ରୁଯ୍ୟକ |
| ନାଟକ ପରୀକ୍ଷା | ଗଙ୍ଗାଧରଣୀଶ ୧୪ଶ ଶତାବ୍ଦୀ |
| ଧ୍ୱନି ପ୍ରଦୀପ | ପୁଞ୍ଜରାଜ |

| | |
|---|---|
| କୂଟ ସନ୍ଦୋହ | ରାମାନୁଜ |
| କାବ୍ୟେନ୍ଦୁ ପ୍ରକାଶ | କାମରାଜ ଦୀକ୍ଷିତ |
| କାବ୍ୟାଲଙ୍କାର ଶିଶୁପ୍ରବୋଧ | ପୁଣ୍ଡରୀକ |
| କାବ୍ୟାର୍ଥ ଗୁମ୍ଫ | ହରିପ୍ରସାଦ ୧୮ଶ ଶତାବ୍ଦୀ |
| କାବ୍ୟାମୃତ ତରଙ୍ଗିଣୀ | —— ବିଖ୍ୟାତ କାବ୍ୟପ୍ରକାଶର ସପ୍ତମଉଲ୍ଲାସର ଖଣ୍ଡନ |
| କାବ୍ୟ ଦର୍ପଣ | ରତ୍ନପାଣି |
| କାବ୍ୟନିର୍ଣ୍ଣୟ, | ଧନିକ |
| କାବ୍ୟତତ୍ତ୍ୱବିସ୍ତର | ହଳଧର ରଥ |
| ଅଳଂକାର ସୂର୍ଯ୍ୟୋଦୟ | ଯଜ୍ଞେଶ୍ୱର ଦୀକ୍ଷିତ |
| ଅଳଂକାର ସୂତ୍ର | ଶୌଦ୍ଧୋଦନି |
| ଅଳଂକାର ସାର | ବାଳ କୃଷ୍ଣ |
| ଅଳଂକାର ଶିରୋମଣି | ଜୀବନାଥ |
| ଅଳଂକାର ଶିଖରଭୂଷଣ | କଦାଳାଚାର୍ଯ୍ୟ [?] |
| ଅଳଂକାର ରାଘବ | ଯଜ୍ଞେଶ୍ୱର ଦୀକ୍ଷିତ |
| ଅଳଂକାର ମୁକ୍ତାବଳୀ | ରାମସୁଧୀବର |
| ମଣିଦର୍ପଣ | ବେଙ୍କଟ ଅପ୍ପୟ୍ୟା [?] |
| ଅଳଂକାର ମଞ୍ଜୁଷା | ପୁରୋହିତ ଦେବଶଙ୍କର |
| ସାହିତ୍ୟ କଳ୍ପବଲ୍ଲୀ | ଅନନ୍ତ |
| ଶିଶୁ କଳ୍ପଲତା | —— ୧୬ଶ ଶତାବ୍ଦୀ |
| ଅଳଂକାର କୁଳପ୍ରଦୀପ | ବିଶ୍ୱେଶ୍ୱର — ୧୮ଶ ,, ,, |
| ଅଳଂକାର କୌସ୍ତୁଭ | ,, ,, —୧୮ଶ ,, |
| ,, ,, | କବିକର୍ଣ୍ଣପୂର—୧୬ଶ ,, ,, |
| ଅଳଙ୍କାର କୌସ୍ତୁଭ | କଲ୍ୟାଣସୁବ୍ରହ୍ମଣ୍ୟ ୧୮ଶ ଶତାବ୍ଦୀ |

| | |
|---|---|
| ଅଳଂକାରଉପମାଳା | ଦାମୋଦର |
| ଅଳଂକାର ଚନ୍ଦ୍ରିକା | ନାରାୟଣ ଦେବ |
| ଅଳଂକାର ଚନ୍ଦ୍ରୋଦୟ | ବେଣୀଦତ୍ତ ଶର୍ମା (ଛ ଉଲ୍ଲାସରେ ବିଭକ୍ତ) |
| ଅଳଂକାର ଚିନ୍ତାମଣି | ଖାନ୍ତ୍ରବଜ ୧୮ଶ ଶତାବ୍ଦୀ |
| ଅଳଂକାର ତିଳକ | ଭାନୁଦତ୍ତ (୫ଟି ପରିଚ୍ଛେଦ) |
| ଅଳଂକାର ଦର୍ପଣ, | ୧୩୯ ଶ୍ଲୋକରେ ପ୍ରାକୃତରେ ଲିଖିତ |
| ଅଳଂକା ନିକର୍ଷ | ସୁଧୀନ୍ଦ୍ର ଯୋଗୀ |
| ଅଳଂକାର ମଞ୍ଜରୀ | ସୁଗଲେଲ |
| ଅଳଂକାର ମୀମାଂସା | ଭଗୀରଥ ରଥ-( ଜଲ୍ଲୀପୁ । ବାମଣ୍ଡା ନରେଶ ତ୍ରିଭୁବନ ଦେବଙ୍କ ପ୍ରୋତ୍ସାହରେ ଲିଖିତ । ପ୍ରାୟ ୭୦ ଅଳଂକାର ଏଥିରେ ଆଲୋଚିତ । ) |

## ଦ୍ୱିତୀୟ ପରିଚ୍ଛେଦ

### ଅଳଂକାର ଶାସ୍ତ୍ରର ଆଲୋଚିତ ବିଷୟ :—

ଅଳଂକାର ଶାସ୍ତ୍ରର କଳେବର ବଡ ବିଶାଳ । ଏଥିରେ କାବ୍ୟର ଲକ୍ଷଣ ଠାରୁ ଆରମ୍ଭ କରି କାବ୍ୟ ଭେଦ, କାବ୍ୟର ଶବ୍ଦ ଓ ଅର୍ଥ, ନାୟକ ନାୟିକା, ଅଳଂକାର ପ୍ରଭୃତି ନାନା ବିଷୟର ବିଚାର କରାଯାଏ । କିନ୍ତୁ ଏଠାରେ ଗୋଟିଏ କଥା ମନେ ରଖିବାକୁ ହେବ ଯେ ପ୍ରତ୍ୟେକ ଅଳଂକାର ଗ୍ରନ୍ଥରେ ଅଳଂକାର ଶାସ୍ତ୍ରଗତ ସକଳ ବିଷୟ ଆଲୋଚିତ ହୋଇ ନ ଥାଏ । ଯେଉଁ ଗ୍ରନ୍ଥରେ ସକଳ ବିଭାଗର ବିଚାର କରା ଯାଇଛି, ତହିଁରେ ସାଧାରଣତଃ ନିମ୍ନଲିଖିତ କ୍ରମ ପରିଲକ୍ଷିତ ହୋଇଥାଏ । ପ୍ରଥମରେ କାବ୍ୟର ପ୍ରୟୋଜନ, ତା ପରେ କାବ୍ୟଲେଖାର ସାଧନ (ହେତୁ) ଏବଂ କାବ୍ୟର ଲକ୍ଷଣ ନିର୍ଦ୍ଦେଶ କରାଯାଏ । ଏ ଲକ୍ଷଣ କଲାବେଳେ ଅର୍ଥପୂର୍ଣ୍ଣ ଓ ଶବ୍ଦମୟ ସାହିତ୍ୟର ଶବ୍ଦ ବା ଅର୍ଥ ଉପରେ ଜୋର ଦିଆଯାଏ । ଏଥିରୁ ଶବ୍ଦର ଅର୍ଥ ପ୍ରକାଶିକା ଶକ୍ତି ସମ୍ପର୍କରେ ଆଲୋଚନା ଅନିବାର୍ଯ୍ୟ ହୋଇପଡ଼େ । ଅନନ୍ତର ଗଦ୍ୟ ପଦ୍ୟ ପ୍ରଭୃତି ସାହିତ୍ୟର ବିଭାଗ କରଣ, ସତ୍ କାବ୍ୟର ଗୁଣ ଓ ଦୋଷ ନିରୂପଣ ଓ ତାପରେ କାବ୍ୟର ମଣ୍ଡନ ସଦୃଶ ଅଳଂକାରର ବିଚାର ଆବଶ୍ୟକ ହୁଏ । ଉତ୍କଳୀୟ ଅଳଂକାରିକ ଭାରତ ବିଖ୍ୟାତ ବିଶ୍ୱନାଥ କବିରାଜଙ୍କ ସାହିତ୍ୟ-ଦର୍ପଣ ପ୍ରଭୃତି କେତେକ ଗ୍ରନ୍ଥରେହିଁ ସମସ୍ତ ବିଷୟ ଆଲୋଚିତ ହୋଇଛି । ନିମ୍ନରେ ସାହିତ୍ୟ-ଦର୍ପଣ ଆଲୋଚିତ ବିଷୟ-

ମାନଙ୍କର ଏକ ସଂକ୍ଷିପ୍ତ ସୂଚୀ ଦିଆଯାଉଛି । ଏଥିରୁ ଅଲଂକାର ଶାସ୍ତ୍ରଗତ ବିଷୟର ପରିସର ସହଜରେ ଜାଣି ହେବ ।

## ସାହିତ୍ୟ-ଦର୍ପଣର ବିଷୟ ବସ୍ତୁ :—

ପ୍ରଥମ ପରିଚ୍ଛେଦ—କାବ୍ୟର ଫଳ—କାବ୍ୟଲକ୍ଷଣ ବିଚାର—କାବ୍ୟର ଦୋଷ ଗୁଣ—ଅଳଂକାର-ରୀତିର ସ୍ୱରୂପନିର୍ଦ୍ଦେଶ ।

୨ୟ ପରିଚ୍ଛେଦ—ବାକ୍ୟ-ମହାବାକ୍ୟ-ପଦ-ଅଭିଧା ଓ ଲକ୍ଷଣା-ବ୍ୟଞ୍ଜନା, ଏମାନଙ୍କର ଭେଦ କଥନ ।

୩ୟ ପରିଚ୍ଛେଦ—ରସ—ରସାନୁଭବ ପ୍ରକାର—କରୁଣ ପ୍ରଭୃତିର ରସତ୍ୱ—ରସର ଅନିର୍ବଚନୀୟତା—ବିଭାବ ଓ ତାହାର ଭେଦ—ନାୟକ ଓ ତାହାର ଭେଦ ନାୟିକା ଓ ସେମାନଙ୍କର ଅଳଂକାର—ଅନୁରାଗ ଓ ଇଙ୍ଗିତ—ଦୂତୀ—ତାହାର ଭେଦ ଓ ଗୁଣ—ଉଦ୍ଦୀପନ, ଅନୁଭାବ—ସାତ୍ତ୍ୱିକ, ବ୍ୟଭିଚାରୀ ଓ ସ୍ଥାୟୀଭାବ—ରସର ଭେଦ—ଶୃଙ୍ଗାର ଓ ତାହାର ଭେଦ—କାମର ଦଶାବସ୍ଥା—ପ୍ରବାସରେ କାମାବସ୍ଥା—ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବୀଭତ୍ସ, ଅଦ୍‌ଭୁତ, ଶାନ୍ତ, ବତ୍ସଳ, ପରସ୍ପର ବିରୋଧୀ ରସ—ଉନ୍ମାଦ ପ୍ରଭୃତିର ସ୍ଥାୟିତ୍ୱ ନିରାକରଣ—ସଞ୍ଚାରୀ-ଭାବ ପ୍ରଭୃତିରେ ରସତ୍ୱ ପ୍ରତିପାଦନ—ଭାବ—ରସାଭାସ—ଭାବାଭାସ ।

୪ର୍ଥ ପରିଚ୍ଛେଦ—କାବ୍ୟଭେଦ—ଧ୍ୱନି ଓ ତାର ଭେଦ—ଗୁଣୀଭୂତ ବ୍ୟଙ୍ଗ୍ୟ ଓ ତାର ଭେଦ ।

୫ମ ପରିଚ୍ଛେଦ—ବ୍ୟଞ୍ଜନାର ଆବଶ୍ୟକତା—ବ୍ୟଞ୍ଜନାର ଅନ୍ୟାନ୍ୟ ଅନ୍ତର୍ଭାବ ନିରାକରଣ ।

୬ଷ୍ଠ ପରିଚ୍ଛେଦ—ଦୃଶ୍ୟ କାବ୍ୟ—ଅଭିନୟ—ଆଙ୍ଗିକ, ବାଚିକ ଆହାର୍ଯ୍ୟ, ସ୍ୱାତ୍ତ୍ୱିକ—ଦଶବିଧ ରୂପକ—ନାଟକ, ପ୍ରକରଣ, ଭାଣ, ବ୍ୟାୟୋଗ ସମବକାର, ଡିମ, ଈହାମୃଗ, ଅଙ୍କ ଓ ବୀଥି ଓ ପ୍ରହସନ—ରଙ୍ଗ—ନାନ୍ଦୀ—ସୂତ୍ରଧର—ପ୍ରସ୍ତାବନା-ପଞ୍ଚସନ୍ଧି—ମୁଖ—ପ୍ରତିମୁଖ, ଗର୍ଭ, ବିମର୍ଷ, ଉପସଂହୃତ—ବୃତ୍ତି, କୌଶିକୀ, ସାତ୍ତ୍ୱିକୀ, ଆରଭଟୀ ଓ ଭାରତୀ—ଭାଷା-ବିଭାଗ—ସଂସ୍କୃତ, ଶୌରସେନୀ, ମହାରାଷ୍ଟ୍ରୀ, ମାଗଧୀ, ଅର୍ଦ୍ଧମାଗଧୀ, ପ୍ରାଚ୍ୟା, ଅବନ୍ତୀ, ଦାକ୍ଷିଣାତ୍ୟା, ଶାବରୀ, ବାହ୍ଲୀକୀ, ଦ୍ରାବିଡ଼ୀ, ଆଭୀରୀ, ଚଣ୍ଡାଳୀ, ପୈଶାଚୀ—ନାଟିକା—ତୋଟକ—ଗୋଷ୍ଠୀ—ସଟ୍ଟକ—ନାଟ୍ୟରାସକ—ସଂଲାପକ—ଶ୍ରୀଗଦିତ ଶିଳ୍ପକ—ଉଲ୍ଲୋପ୍ୟକ—ପ୍ରକରଣିକା—ହଲ୍ଲୀଶ—ଭାଣିକା—ମହାକାବ୍ୟ—ଖଣ୍ଡକାବ୍ୟ—କୋଷ—ଗଦ୍ୟକାବ୍ୟ—କଥା ଆଖ୍ୟାୟିକା—ଚମ୍ପୂ—ବିରୁଦ—କରମ୍ଭକ ।

୭ମ ପରିଚ୍ଛେଦ—ଦୋଷଲକ୍ଷଣ ଓ ପଞ୍ଚବିଧ ଦୋଷ-ପଦଗତ—ପଦାଂଶ ଗତ, ବାକ୍ୟଗତ, ଅର୍ଥଗତ ଓ ରସଗତ ।

୮ମ ପରିଚ୍ଛେଦ—ଗୁଣଲକ୍ଷଣ, ତ୍ରିବିଧ ଗୁଣ—ମାଧୁର୍ଯ୍ୟ, ପ୍ରସାଦ ଓ ଓଜଃ ।

୯ମ ପରିଚ୍ଛେଦ—ରୀତି, ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ, ଲାଟିକା—ଏମାନଙ୍କ ଲକ୍ଷଣ ଏବଂ ଉଦାହରଣ ।

୧୦ ପରିଚ୍ଛେଦ—ଅଲଂକାର ଲକ୍ଷଣ, ପୁନରୁକ୍ତ—ବଦାଭାସ, ଅନୁପ୍ରାସ ଓ ତାହାର ଭେଦ, ଯମକ, ବକ୍ରୋକ୍ତି, ଭାଷାସମ, ଶ୍ଳେଷ,

ଚିତ୍ର, ଉପମା, ପରିଣାମ, ସନ୍ଦେହ, ଭ୍ରାନ୍ତିମାନ୍, ଉଲ୍ଲେଖ, ଅପହ୍ନୁତି, ନିଶ୍ଚୟ, ଉତ୍ପ୍ରେକ୍ଷା ଓ ତାର ଭେଦ ଅତିଶୟୋକ୍ତି, ତୁଲ୍ୟଯୋଗିତା, ଦୀପକ, ପ୍ରତିବସ୍ତୂପମା, ଦୃଷ୍ଟାନ୍ତ, ନିଦର୍ଶନା, ବ୍ୟତିରେକ, ସହୋକ୍ତି, ବିନୋକ୍ତି, ସମାସୋକ୍ତି, ପରିକର, ଶ୍ଳେଷ, ଅପ୍ରସ୍ତୁତ—ପ୍ରଶଂସା, ବ୍ୟାଜସ୍ତୁତି, ପର୍ଯ୍ୟାୟୋକ୍ତି, ଅର୍ଥାନ୍ତରନ୍ୟାସ, କାବ୍ୟଲିଙ୍ଗ, ଅନୁମାନ, ହେତୁ, ଅନୁକୂଳ ଆକ୍ଷେପ, ବିଭାବନା, ବିଶେଷୋକ୍ତି, ବିରୋଧ ଓ ତାର ଭେଦ, ଅସଙ୍ଗତି, ବିଷମ, ସମ, ବିଚିତ୍ର, ଅଧିକ, ଅନ୍ୟୋନ୍ୟ, ବିଶେଷ, ବ୍ୟାଘାତ, କାରଣମାଳା, ମାଳାଦୀପକ, ଏକାବଳୀ, ସାର, ଯଥାସଂଖ୍ୟ, ପର୍ଯ୍ୟାୟ, ପରିବୃତ୍ତି, ପରିସଂଖ୍ୟା ଉତ୍ତର, ଅର୍ଥାପତ୍ତି, ବିକଳ୍ପ, ସମୁଚ୍ଚୟ, ସମାଧି, ପ୍ରତ୍ୟନୀକ, ପ୍ରତୀପ, ମିଳିତ, ସାମାନ୍ୟ, ତଦ୍‌ଗୁଣ, ଅତଦ୍‌ଗୁଣ, ସୂକ୍ଷ୍ମ, ବ୍ୟାଜୋକ୍ତି, ସ୍ୱଭାବୋକ୍ତି, ଭାବିକ, ଉଦାତ୍ତ, ରସବାନ୍, ପ୍ରେୟାନ୍, ଊର୍ଜସ୍ୱୀ, ସମାହିତ, ଭାବୋଦୟ, ଭାବସନ୍ଧି, ଭାବ ସମ, ସଙ୍କର ଓ ସଂସୃଷ୍ଟି ।

## ବିଷୟବସ୍ତୁ ଦୃଷ୍ଟିରୁ ଗ୍ରନ୍ଥମାନଙ୍କର ବିଭାଗ –

ଉପରେ କେବଳ ଗୋଟିଏ ଗ୍ରନ୍ଥର ସୂଚୀ ଦିଆଗଲା । ବିଷୟ ବସ୍ତୁର ଆଲୋଚନା ଦୃଷ୍ଟିରୁ ସଂସ୍କୃତ ଅଲଂକାର ଗ୍ରନ୍ଥମାନଙ୍କୁ ଅଠ ଭାଗରେ ବିଭକ୍ତ କରାଯାଇପାରେ ।

୧ । ଯେଉଁଥିରେ ଅଲଂକାର ଶାସ୍ତ୍ରଗତ ସବୁ ବିଷୟ ଆଲୋଚିତ ହୋଇଛି ଯଥା :—ସାହିତ୍ୟଦର୍ପଣ, ପ୍ରତାପରୁଦ୍ର ଯଶୋଭୂଷଣ ।

୨ । ଅନେକ ଗ୍ରନ୍ଥରେ ନାଟକ-ପ୍ରକରଣ ବ୍ୟତୀତ ପ୍ରାୟ ଅନ୍ୟସବୁ ଆଲୋଚିତ—କାବ୍ୟାଦର୍ଶ, କାବ୍ୟାଲଂକାର ସୂତ୍ର, କାବ୍ୟାଲଂକାର, କାବ୍ୟ ପ୍ରକାଶ; ରସଗଙ୍ଗାଧର ।

୩ । କେତେକ ଗ୍ରନ୍ଥରେ କେବଳ ନାଟ୍ୟ ଓ ରସ ବିଷୟକ ଆଲୋଚନା ହୋଇଛି, ଯଥା :—ନାଟ୍ୟଶାସ୍ତ୍ର, ଦଶରୂପକ ।

୪ କେବଳ ଅଳଂକାର ପ୍ରକରଣର ଆଲୋଚନା ହୋଇଥିବା ଗ୍ରନ୍ଥ, ଯଥା :—ଅଲଂକାର ସର୍ବସ୍ୱ, କୁବଳୟାନନ୍ଦ, ଶବ୍ଦମୀମାଂସା ।

୫ । ଅନ୍ୟ କେତେ ଗ୍ରନ୍ଥରେ ବିଶେଷ ଭାବେ ଗୋଟିଏ ମତବାଦର ବ୍ୟାଖ୍ୟାନ ଓ ଦୃଢ଼ ପ୍ରତିଷ୍ଠା କରାଯାଇଛି, ଯଥା :—ଧ୍ୱନ୍ୟାଲୋକ, ବକ୍ରୋକ୍ତିଜୀବିତ, ବ୍ୟକ୍ତି ବିବେକ ।

୬ । କେବଳ ଶବ୍ଦଶକ୍ତିର ଆଲୋଚନା ହୋଇଥିବା ଗ୍ରନ୍ଥ, ଯଥା—ଅଭିଧାବୃତ୍ତି ମାତୃକା, ଶବ୍ଦ ବ୍ୟାପାର ବିଚାର, ବୃତ୍ତି ବାର୍ତ୍ତିକ ।

୭ । କେବଳ ରସ ବିଷୟକ ଗ୍ରନ୍ଥ, ଯଥା :—ଶୃଙ୍ଗାରତିଳକ, ରସତରଙ୍ଗିଣୀ ।

୮ । ମିଶ୍ରିତ—ଯଥା :—ରସମଞ୍ଜରୀ । ଏଥିରେ ନାୟକ ନାୟିକା ଭେଦ ମୁଖ୍ୟ ଆଲୋଚ୍ୟ ବିଷୟ ଓ ଅନ୍ୟ କେତେ ବିଷୟର ମଧ୍ୟ ଆଲୋଚନା ହୋଇଛି ।

## କାବ୍ୟର ପ୍ରୟୋଜନ:—

ଏ ତ ଗଲା ଆଲୋଚିତ ପ୍ରକରଣ ବା ବିଷୟ ଦୃଷ୍ଟିରୁ ଗ୍ରନ୍ଥମାନଙ୍କର ବିଭାଗ । ବର୍ତ୍ତମାନ୍ କାବ୍ୟ ରଚନାର ପ୍ରୟୋଜନ ସମ୍ପର୍କରେ ଅଳଂକାରିକମାନଙ୍କ ମତବାଦର ଅବତାରଣା କରା-

ଯାଉ । ପ୍ରଥମରେ ଅତି ସ୍ଥୂଳଭାବରେ କହିବାକୁ ଗଲେ କାବ୍ୟର ତିନିଗୋଟି ପ୍ରୟୋଜନ ଦେଖାଯାଏ ।

୧ । ଚିତ୍ତବିନୋଦନ ଓ ଆନନ୍ଦୋପଭୋଗ ।

୨ । ପାଠକମାନଙ୍କୁ ଉତ୍ତମ ନୀତିଶିକ୍ଷାଦାନ ଓ ସନ୍ମାର୍ଗପ୍ରେରଣ ।

୩ । କବିଯଶଃ ପ୍ରାପ୍ତି ଓ କାବ୍ୟକଳାରେ ଦକ୍ଷତା ସମ୍ପାଦନ ।

ଦୃଶ୍ୟକାବ୍ୟଶାସ୍ତ୍ରର ଆକର ସ୍ୱରୂପ ନାଟ୍ୟଶାସ୍ତ୍ରରେ ଲେଖା ଅଛି ଯେ, "ବିନୋଦକରଣଂ ଲୋକେ" ବା ବିନୋଦନ-ଚନ୍ତା ନିର୍ଦ୍ଦେଶ ଲାଗି ଭରତ ନାଟ୍ୟଶାସ୍ତ୍ର ପ୍ରଣୟନ କରିଥିଲେ । ଧ୍ୱନ୍ୟାଲୋକର ଲୋଚନ ଭାଷ୍ୟ ମତରେ "ପ୍ରାଧାନ୍ୟେନାନନ୍ଦ ଏବ" ବା କାବ୍ୟର ପ୍ରଧାନ ଲକ୍ଷ୍ୟ ହେଉଛି ଆନନ୍ଦପ୍ରାପ୍ତି । କାବ୍ୟପ୍ରକାଶ ମତରେ "ରସାସ୍ୱାଦସମୁଦ୍‌ଭୂତଂ...ଆନନ୍ଦମ୍" ବା କାବ୍ୟରସ ଆସ୍ୱାଦନଜନିତ ଆନନ୍ଦ ହେଉଛି କାବ୍ୟର ମୁଖ୍ୟ ପ୍ରୟୋଜନ । ଭାମହଙ୍କ ମତରେ ଧର୍ମାର୍ଥ କାମମୋକ୍ଷ ଓ କଳାରେ ବିଚକ୍ଷଣତା ତଥା ଆନନ୍ଦପ୍ରାପ୍ତି ଓ କୀର୍ତ୍ତିଖ୍ୟାପନ କାବ୍ୟର ଫଳସ୍ୱରୂପ । ବାମନଙ୍କର ମଧ୍ୟ ଠିକ୍ ସେହି ସିଦ୍ଧାନ୍ତ । ରୁଦ୍ରଟଙ୍କ ମତରେ ଶାସ୍ତ୍ର ଭୀରୁମାନେ କାବ୍ୟ-ଦ୍ୱାରରେ ଚତୁର୍ବର୍ଗ ଫଳପ୍ରାପ୍ତିରୂପ ଭବନରେ ପ୍ରବେଶ କରି ପାରିବେ । ମମ୍ମଟଙ୍କ ସିଦ୍ଧାନ୍ତ ଅନୁସାରେ କାବ୍ୟରେ ପ୍ରତ୍ୟକ୍ଷଭାବେ ଧର୍ମ ବା ଦାର୍ଶନିକ ଶିକ୍ଷାଦାନ କରିବା ଅସମୀଚୀନ । ତାଙ୍କ ଭାଷାର ଅବଲମ୍ବନରେ କହିବାକୁ ଗଲେ କାବ୍ୟ କାନ୍ତା ତୁଲ୍ୟ ସରସତା-ସମ୍ବଳିତ ପଦରେ ରାବଣ ପରି ନ ହୋଇ ରାମଙ୍କ ପରି ଆଚରଣ-ଶୀଳ ହେବା ଉଚିତ—ଏପରି ଉପଦେଶ ଦେବା ଦରକାର ।

ଏହିଠାରେ କେବଳ କାବ୍ୟର ପ୍ରୟୋଜନ ମମ୍ମଟଙ୍କ ମତରେ ପୂର୍ଣ୍ଣ ଉପଲବ୍ଧ ହୁଏ ।

## କାବ୍ୟର "ହେତୁ" ବା ସାଧନଃ—

କବି ଯାହା ଯାହା ଥିଲେ କାବ୍ୟ ଲେଖିପାରେ ସେହି ସବୁ ହେଉଛନ୍ତି 'କାବ୍ୟହେତୁ' ବା କାବ୍ୟ-ସାଧନ । ଏବିଷୟରେ ବିଭିନ୍ନ ଆଳଂକାରିକ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ତାର ସାର ମର୍ମ ହେଉଛି, କାବ୍ୟ-ସାଧନ ତିନିଗୋଟି ବସ୍ତୁ ବା ଶକ୍ତିରେ ପର୍ଯ୍ୟବସିତ, ଯଥାଃ—୧ । ପ୍ରତିଭା ୨ । ବ୍ୟୁତ୍ପତ୍ତି ବା ପାଣ୍ଡିତ୍ୟ ୩ । ଅଭ୍ୟାସ । କାବ୍ୟାଦର୍ଶର ଭାଷାରେ ନୈସର୍ଗିକୀ ପ୍ରତିଭା, ନିର୍ମଳ ବ୍ୟାପକ ଜ୍ଞାନ ଓ ଅମନ୍ଦ—ଅଭିଯୋଗ ବା ଅବିରତ ଚେଷ୍ଟା ହେଉଛନ୍ତି କାବ୍ୟର ସାଧନ । ଭାମହ ମଧ୍ୟ କବିର ପ୍ରତିଭା ଓ ଶବ୍ଦଜ୍ଞାନର ପ୍ରାଧାନ୍ୟ ଉଲ୍ଲେଖ କରିଛନ୍ତି । ରୁଦ୍ରଟ ସ୍ପଷ୍ଟ ଲେଖିଛନ୍ତି—"ଶକ୍ତିର୍ବ୍ୟୁତ୍ପତ୍ତି-ରଭ୍ୟାସଃ" ହେଉଛନ୍ତି କାବ୍ୟ ହେତୁ । କାବ୍ୟପ୍ରକାଶ ଏଥିରେ ପୂର୍ଣ୍ଣ ଏକମତ । ରାଜଶେଖରଙ୍କ ମତରେ କେବଳ 'ପ୍ରତିଭା' ହେଉଛି ପ୍ରଧାନ । ବାଗ୍ଭଟଙ୍କ ମତରେ "ପ୍ରତିଭା" ଶ୍ରେଷ୍ଠତମ ସାଧନ ଓ ଅଭ୍ୟାସ ପ୍ରଭୃତି କେବଳ ସଂସ୍କାରକ ସିନା ହେତୁ ନୁହନ୍ତି । ରସଗଙ୍ଗାଧର ମତରେ "କବିଗତା କେବଳା ପ୍ରତିଭା" ହେଉଛି କାବ୍ୟର ସାଧନ ଓ ମୂଳ । ଭଟ୍ଟତୌତ ସ୍ୱୀୟ 'କାବ୍ୟକୌତୁକରେ' ଲେଖିଛନ୍ତି ଯେ ନବନବୋନ୍ମେଷଶାଳିନୀ ପ୍ରଜ୍ଞା ହେଉଛି ପ୍ରତିଭା ଏବଂ ଏହାର ପ୍ରାଧାନ୍ୟ ସେ ମୁକ୍ତକଣ୍ଠରେ ସ୍ୱୀକାର କରି ଯାଇଛନ୍ତି । ଧ୍ୱନ୍ୟାଲୋକକାର ଓ ବାଗ୍ଭଟାଲଙ୍କାରରେ ମଧ୍ୟ ପ୍ରତିଭାର

ସର୍ବତୋମୁଖୀ ଶକ୍ତି ତଥା ଅପୂର୍ବ ନୂତନ ବସ୍ତୁର ସୃଷ୍ଟିମୂଳକ ସାମର୍ଥ୍ୟର କଥା କୁହାଯାଇଛି ।

## ସାଧନ ତ୍ରୟର ଆପେକ୍ଷିକ ଗୁରୁତ୍ୱ—

ପ୍ରତିଭା ଯଦ୍ୟପି ସର୍ବ ପ୍ରଧାନ, ତଥାପି ଅନ୍ୟ ଦୁଇଟିର ସାହଚର୍ଯ୍ୟ ଯେ ନିତାନ୍ତ ଦରକାର କହିବା ବାହୁଲ୍ୟମାତ୍ର । ପ୍ରତିଭାର ପୂର୍ଣ୍ଣ ବିକାଶ ସାଧନ କରିବାକୁ ହେଲେ ଶବ୍ଦଶାସ୍ତ୍ରରେ ତଥା ଲୌକିକ ନାନା କଥାରେ ଗଭୀର ଜ୍ଞାନ ଅର୍ଜନ କରିବାକୁ ହେବ । ପ୍ରତିଭା ଯେ ଏକ ନୈସର୍ଗିକ ଶକ୍ତି, ଏହା କେହି ଅସ୍ୱୀକାର କରୁ ନାହିଁ ଏବଂ ପ୍ରତିଭାବାନ୍ କବି ଯେ ସର୍ବପ୍ରଥମ କାବ୍ୟରେ ମଧ୍ୟ କବି ପ୍ରତିଭା ବେଶ୍ ଫୁଟାଇ ପାରିବ, ଏଥିରେ ସନ୍ଦେହ ନାହିଁ । ତଥାପି ଅଭ୍ୟାସ ହେଉଛି ମାନବ ସମାଜର ପ୍ରକୃତି । ଅଭ୍ୟାସ ବଳରେ ଯେ ପ୍ରତିଭାର ପୂର୍ଣ୍ଣ ବିକାଶ ହେବ, କାବ୍ୟ ସର୍ବାଙ୍ଗସୁନ୍ଦର ଓ ନିର୍ଦ୍ଦୋଷ ତଥା ଚମତ୍କାର ହେବ, ଏଥିରେ ମତଦ୍ୱୈଧ ରହିବାର ସମ୍ଭାବନା କାର୍ଯ୍ୟତଃ ଖୁବ୍ କମ୍ । ସଂସ୍କୃତ ଅଳଙ୍କାର ଶାସ୍ତ୍ରର ଏ ସାଧନ ବିଷୟ ବାସ୍ତବରେ ଯେ କି ଗଭୀର ଚିନ୍ତାପ୍ରସୂତ ଓ ଅନୁଭୂତ ଚିନ୍ତା; ଦେଖିଲେ ଆଜି ସ୍ତମ୍ଭିତ ହେବାକୁ ହୁଏ । ଆଜି କିନ୍ତୁ ଏ ଚର୍ଚ୍ଚାର ଅଭାବରେ ଏହି ସିଦ୍ଧାନ୍ତ ଯେତେବେଳେ ଅନ୍ୟ ଭାଷାରେ ଆମକୁ ଜଣାଇ ଦିଆଯାଏ, ଆମେ ଆମ ସମ୍ପଦ ଓ ଗରିମା ପାସୋରି ଦେଇ ଅନ୍ୟ ଦ୍ୱାରରେ ଜ୍ଞାନ-ଭିକ୍ଷା ଲାଗି ଯୁଗ୍ମକରରେ ଦଣ୍ଡାୟମାନ ହୁଉ ଓ ଅନ୍ୟର ତୁଳନାରେ ନିଜ ନିଜକୁ ହାସ୍ୟ କରିବାକୁ ଅଗ୍ରସର ହେଉ ।

## କାବ୍ୟର ସ୍ୱରୂପ (ଲକ୍ଷଣ):—

କାବ୍ୟର ଲକ୍ଷଣ ଓ କାବ୍ୟରେ ଶବ୍ଦ ବା ଅର୍ଥର ପ୍ରାଧାନ୍ୟ ବିଷୟରେ ଆଲଂକାରିକ ମାନଙ୍କ ମଧ୍ୟରେ ମତାନୈକ୍ୟ ଦେଖାଯାଏ । କେହି କେହି ଶବ୍ଦର ପ୍ରାଧାନ୍ୟ, କେହି କେହି ବା ଅର୍ଥର ଗୁରୁତ୍ୱ ଓ ଅନ୍ୟ କେତେକ ରସର ଶ୍ରେଷ୍ଠତ୍ୱ ସ୍ୱୀକାର କରି କାବ୍ୟର ଲକ୍ଷଣମାନ ନିର୍ଦ୍ଦେଶ କରି ଯାଇଛନ୍ତି । ଭାମହଙ୍କ ମତରେ ଶବ୍ଦ ଓ ଅର୍ଥର ସାହିତ୍ୟ ହେଉଛି କାବ୍ୟ । ଏଥିରେ ସେ କାବ୍ୟର ନିର୍ଦ୍ଦୋଷତା ଓ ଆଲଂକାରିତା ପ୍ରତି ମଧ୍ୟ ଆମର ଦୃଷ୍ଟି ଆକର୍ଷଣ କରିଛନ୍ତି । ରୁଦ୍ରଟ ଠିକ୍ ଏହି ମର୍ମରେ "ଶବ୍ଦାର୍ଥୌ ସହିତୌ" କାବ୍ୟ ବୋଲି ଲେଖିଛନ୍ତି । ''ବକ୍ରୋକ୍ତିଜୀବିତ'' ର ଶବ୍ଦାର୍ଥ ସହିତ ବକ୍ରୋକ୍ତିର ଅବିଚ୍ଛେଦ୍ୟ ସମ୍ବନ୍ଧ କିପରି ରହିଛି, ତାହା ପ୍ରତିପାଦନ କରିଛନ୍ତି । ମମ୍ମଟଙ୍କ ମତରେ ସଗୁଣ ଅଳଙ୍କାରଯୁକ୍ତ ନିର୍ଦ୍ଦୋଷ ଶବ୍ଦାର୍ଥ ହେଉଛି କାବ୍ୟ । 'ବିଦ୍ୟାନାଥ, ସ୍ୱୀୟ ପ୍ରତାପ ରୁଦ୍ର ଯଶୋଭୂଷଣରେ ଲେଖିଛନ୍ତି ଗୁଣାଳଙ୍କାର ସହିତ ଦୋଷ ବର୍ଜିତ ଶବ୍ଦାର୍ଥର ନାମ କାବ୍ୟ । ବାଗ୍‌ଭଟ୍ଟ ପୂର୍ବୋକ୍ତ ଲକ୍ଷଣ ପୂର୍ଣ୍ଣମାତ୍ରାରେ ସ୍ୱୀକାର ନ କରି କାବ୍ୟରେ ସର୍ବଦା ଯେ ଅଳଙ୍କାର ରହିବା ଆବଶ୍ୟକ ଏହା ସ୍ୱୀକାର କରି ନାହାନ୍ତି । ତାଙ୍କ ମତରେ କାବ୍ୟ ପ୍ରାୟଶଃ ଅଳଙ୍କାର ଯୁକ୍ତ ହେବା ଉଚିତ ।

ଅନ୍ୟ କେତେକ ଲେଖକ 'ଶବ୍ଦାର୍ଥ' ମଧ୍ୟରୁ ଅର୍ଥ ଅପେକ୍ଷା ଶବ୍ଦର ଆପେକ୍ଷିକ ପ୍ରାଧାନ୍ୟ ସ୍ୱୀକାର କରନ୍ତି । ଅଗ୍ନିପୁରାଣରେ ଲେଖା ଅଛି—ଅଳଙ୍କାରଯୁକ୍ତ ସଗୁଣ ଓ ଦୋଷଶୂନ୍ୟ ଇଷ୍ଟାର୍ଥ ବ୍ୟବଚ୍ଛିନ୍ନା ପଦାବଳୀର ନାମ କାବ୍ୟ । 'ଏହି ମତର ପୋଷକତାରେ କାବ୍ୟାଦର୍ଶରେ ମଧ୍ୟ କାବ୍ୟ ଲକ୍ଷଣ ନିରୂପିତ ହୋଇଛି

ରସଗଙ୍ଗାଧର ମତରେ ରମଣୀୟ ଅର୍ଥ ପ୍ରତିପାଦକ ଶବ୍ଦ ହେଉଛି କାବ୍ୟ । ଏପରି ବହୁ ଲକ୍ଷଣ ଦେଖାଯାଏ ।

## କାବ୍ୟ ଆତ୍ମା ନିରୂପଣ :—

କାବ୍ୟାଦର୍ଶର ଭାଷାରେ ଯେବେ କୁହାଯାଏ—ଇଷ୍ଟାର୍ଥ ବ୍ୟବଚ୍ଛିନ୍ନା ପଦାବଳୀ ହେଉଛି କାବ୍ୟର ଶରୀର, ତେବେ ପ୍ରଶ୍ନ ଉଠେ, କାବ୍ୟର ଆତ୍ମା କଏ ? କାବ୍ୟରେ ଶବ୍ଦକୁ ଯେବେ ମନୁଷ୍ୟର ଶରୀର ସଙ୍ଗେ ତୁଳନା କରାଯାଏ, ତେବେ ମନୁଷ୍ୟର ଆତ୍ମା ସଙ୍ଗେ କେଉଁ ଅତିପ୍ରଧାନ କାବ୍ୟ-ଅଙ୍ଗର ତୁଳନା କରାଯାଇ ପାରିବ ? ଏ ବିଷୟରେ ନାନା ମତବାଦ ଦେଖାଯାଏ । ଏ ମତବାଦୀଙ୍କୁ ମତ ସ୍ୱାତନ୍ତ୍ର୍ୟ ଦୃଷ୍ଟିରୁ ପାଞ୍ଚଭାଗରେ ବିଭକ୍ତ କରାଯାଇ ପାରେ । ଯେ ଯେଉଁ ଭାଗରେ ଉଲ୍ଲିଖିତ ଓ ବିଭକ୍ତ ହେବେ, ତାଙ୍କ ମତରେ ସେହି ଅଂଶ ( ଯେପରି ରସ, ଅଳଙ୍କାର ) ହେଉଛି ସର୍ବ ପ୍ରଧାନ ତେଣୁ ତାହା ବାସ୍ତବରେ କାବ୍ୟର ଆତ୍ମାସ୍ୱରୂପ । ନିମ୍ନରେ ପାଞ୍ଚୋଟି ପ୍ରଧାନ ମତବାଦର ଉଲ୍ଲେଖ କରାଯାଇ ମତବାଦୀଙ୍କର ନାମ ମଧ୍ୟ ନିର୍ଦ୍ଦେଶ କରାଯାଉଛି—

## ୧ ରସ ହେଉଛି କାବ୍ୟର ଆତ୍ମା :—

ଏ ମତବାଦର ବୀଜ ସର୍ବପ୍ରଥମେ ଭରତ ନାଟ୍ୟଶାସ୍ତ୍ରରେ ଦେଖିବାକୁ ମିଳେ । ଅବଶ୍ୟ ଭରତ, ନାଟ୍ୟଶାସ୍ତ୍ରର ପ୍ରାଧାନ୍ୟରେ ଏହା ଆଲୋଚନା କରିଛନ୍ତି । ସେ ଲେଖିଛନ୍ତି, "ବିଭାବାନୁଭାବ— ବ୍ୟଭିଚାରୀ— ସଂଯୋଗାଦ୍ରସ— ନିଷ୍ପତ୍ତିଃ ।"

ଅର୍ଥାତ୍ ବିଭାବ ଅନୁଭାବାଦିର ସଂଯୋଗରୁ ରସୋତ୍ପତ୍ତି ହୁଏ । ମନୁଷ୍ୟର ରତି, ହାସ୍ୟ, କ୍ରୋଧ, ଭୟ, ଶୋକ, ଉତ୍ସାହ, ଜୁଗୁପ୍ସା ଓ ବିସ୍ମୟ, ଏ ଆଠଟି ଭାବ ସ୍ଥାୟୀରୂପେ ଚିତ୍ତରେ ଲୁଚି ରହି କହିଯାଇଛି । ତତ୍ ଶବ୍ଦ ଶ୍ରବଣରେ ବା ସଦ୍ଅଭିନୟ ଦର୍ଶନରେ ଯେତେବେଳେ ସୁପ୍ତ ସ୍ଥାୟୀଭାବମାନଙ୍କର ଜାଗରଣ ହୁଏ, ସେତେ-ବେଳେ ଶ୍ରୋତା ବା ଦ୍ରଷ୍ଟା ଏକ ଅନିର୍ବଚନୀୟ ଆନନ୍ଦ ଉପଭୋଗ କରନ୍ତି । ଏହି ଆନନ୍ଦର ନାମ ଆଲଂକାରିକ ଭାଷାରେ ହେଉଛି ରସ । ନାଟ୍ୟ ଶାସ୍ତ୍ରର ଷଷ୍ଠ ଓ ସପ୍ତମ ପ୍ରକରଣରେ ରସବାଦର ପୁଙ୍ଖାନୁପୁଙ୍ଖ ବିଚାର କରାଯାଇଛି । ସାହିତ୍ୟ ଦର୍ପଣ ପ୍ରଭୃତିରେ ଶୃଙ୍ଗାର, ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବୀଭତ୍ସ, ଅଦ୍ଭୁତ ଓ ଶାନ୍ତ—ଏ ନବବିଧ ରସର ଉଲ୍ଲେଖ ଅଛି । କିନ୍ତୁ ଭରତ ନାଟକର ସ୍ୱରୂପ ଦୃଷ୍ଟିରୁ ଆଲୋଚନା କରି 'ଶାନ୍ତ' ରସକୁ ନାଟ୍ୟଶାସ୍ତ୍ରରେ ସ୍ଥାନ ଦେଇ ନାହାନ୍ତି । ରୁଦ୍ରଟଙ୍କ ମତରେ ସାହିତ୍ୟ ଦର୍ପଣ-ଉଲ୍ଲିଖିତ ନବବିଧ ରସ ସଙ୍ଗେ 'ପ୍ରେୟାନ୍' ନାମକ ଅନ୍ୟ ଏକ ରସ ମିଶି ରସର ସଂଖ୍ୟା ଦଶ । ଅନ୍ୟ କେତେକଙ୍କ ମତରେ ନବବିଧ ରସ ସଙ୍ଗେ ବାତ୍ସଲ୍ୟ, ଲୌଲ୍ୟ, ଭକ୍ତି, ଓ କାର୍ପଣ୍ୟ ମିଶି ରସର ସଂଖ୍ୟା ତେର । କିନ୍ତୁ ରସତରଙ୍ଗିଣୀର ଷଷ୍ଠ ତରଙ୍ଗରେ ଏ ମତର ଖଣ୍ଡନ ସ୍ୱରୂପ କୁହାଯାଇଛି, ଯେ ଏ ସବୁ ନବ ରସର ଅନ୍ତର୍ଗତ । ଶିବରାମ ସ୍ୱୀୟ ରସରତ୍ନହାରରେ ଲେଖିଛନ୍ତି, ଭକ୍ତି, ଶ୍ରଦ୍ଧା ପ୍ରଭୃତି ନବରସ ବା ଭାବର ଅନ୍ତର୍ଗତ । ରସ କେବଳ କାବ୍ୟର ଆତ୍ମା—ଭରତଙ୍କ ଏ ମତ ସଙ୍ଗେ ଶୃଙ୍ଗାରତିଳକ, କାବ୍ୟମୀମାଂସା, ଶୌଦ୍ଧୋଦନୀ ଓ ଅଲଂକାର ଶେଖର ପୂର୍ଣ୍ଣ ଏକମତ ।

ରସାସ୍ୱାଦ ବା ରସୋପଲବ୍ଧିର ସ୍ୱରୂପ ସମ୍ପର୍କରେ ଲୋଲ୍ଲଟ, ଶଙ୍କୁକ, ଭଟ୍ଟ ନାୟକ ଓ ଅଭିନବ ଗୁପ୍ତଙ୍କ ମଧ୍ୟରେ 'ମତ ବିଭିନ୍ନତା

ଦେଖାଯାଏ । ଲୋଲ୍ଲଟଙ୍କ ମତରେ ରସର ମୂଳ କାରଣ ହେଉଛି କାବ୍ୟର ନାୟକ । ଏ ମତ ଖଣ୍ଡନ କରି ଶଙ୍କୁକ କହନ୍ତି ଯେ ରସ ଏକ ଜ୍ଞାପ୍ୟ ବସ୍ତୁ । ତାହା ଦର୍ଶକର ବା ପାଠକର ଜ୍ଞାନମୂଳକ । ଭଟ୍ଟନାୟକ ଏହା ଖଣ୍ଡନ କରି ରସାସ୍ୱାଦ ମଧ୍ୟ ବ୍ରହ୍ମ, ସାକ୍ଷାତ୍କାର ସ୍ୱରୂପ ବୋଲି ଲେଖିଛନ୍ତି । କିନ୍ତୁ ଅଭିନବ ଗୁପ୍ତ ପୂର୍ବକଥିତ 'ନାଟ୍ୟଶାସ୍ତ୍ର' ମତ ପ୍ରତିଷ୍ଠା କରିଛନ୍ତି ଏବଂ ଏହା କେବଳ ବାସ୍ତବ ବୋଲି ଅଧିକାଂଶ ଅଳଂକାରିକମାନଙ୍କର ମତ ।

## ଅଳଂକାର ହେଉଛି କାବ୍ୟର ଆତ୍ମା:—

ଭାମହ ଏବଂ ଉଦ୍‌ଭଟ ହେଉଛନ୍ତି ଏ ମତବାଦର ପଞ୍ଚ-ପୁରୋଧା । ଦଣ୍ଡୀ, ରୁଦ୍ରଟ, ଓ ପ୍ରତିହାରେନ୍ଦୁରାଜ ପ୍ରଭୃତି ଅନେକେ ଏହାର ସମର୍ଥକ । ଏ ମତବାଦୀମାନେ 'ରସ' ମତବାଦ ନ ଜାଣି ଯେ 'ଅଳଂକାର' ବାଦର ଆଶ୍ରୟ ନେଇଛନ୍ତି, ତାହା ନୁହେଁ । ଭାମହ ଅନେକ ସ୍ଥଳରେ "ରସ"ର ଉଲ୍ଲେଖ ଓ ଆଲୋଚନା କରିଛନ୍ତି । ତଥାପି ଏ ମତବାଦୀମାନେ କାବ୍ୟରେ ରସ ଅପେକ୍ଷା ଅଳଂକାର ପ୍ରଧାନତର ବୋଲି ସିଦ୍ଧାନ୍ତ କରିଛନ୍ତି । ଭାମହ ଓ ଦଣ୍ଡୀଙ୍କ ମତରେ ଗୁଣ ଓ ଅଳଂକାର ମଧ୍ୟରେ ଯେଉଁ ପ୍ରଭେଦ ଅଛି, ତାହା ନଗଣ୍ୟ । ଏପରି କି ଭାମହଙ୍କ ମତରେ "ଭାବିକ" ଅଳଂକାର ହେଉଛି ଗୋଟିଏ ଗୁଣ ଏବଂ ଦଣ୍ଡୀ ଦଶଟି ଗୁଣକୁ ଅଳଂକାର ବୋଲି ନିରୂପଣ କରିଛନ୍ତି । ଭାମହ କାବ୍ୟର ଧ୍ୱନିତତ୍ତ୍ୱ ମଧ୍ୟ ଜାଣିଥିଲେ । ତଥାପି ଅଳଂକାର ଯେ କାବ୍ୟର ସର୍ବଶ୍ରେଷ୍ଠ ବିଭବ ଏବଂ ଆତ୍ମାସ୍ୱରୂପ ଏହା ସେ ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି ।

୩ । ରୀତି ହେଉଛି କାବ୍ୟର ଆତ୍ମା:—

ବାମନ ହେଉଛନ୍ତି ଏ ବାଦର ଅଗ୍ରଣୀ । ବାମନଙ୍କ ମତରେ ଓଜ, ପ୍ରସାଦ, ଶ୍ଳେଷ, ସମତା, ସମାଧି, ମାଧୁର୍ଯ୍ୟ, ସୌକୁମାର୍ଯ୍ୟ, ଉଦାରତା, ଅର୍ଥବ୍ୟକ୍ତି ଓ କାନ୍ତି—ଏ ଦଶଗୁଣ ଶବ୍ଦ ଓ ଅର୍ଥ ଉଭୟଙ୍କର ଅଛି । ଦଣ୍ଡୀ କିନ୍ତୁ ଗୁଣ ଓ ଅଳଂକାର ମଧ୍ୟରେ ବିଶେଷ ପାର୍ଥକ୍ୟ ନାହିଁ ବୋଲି ସ୍ଥିର କରିଛନ୍ତି । ନାଟ୍ୟଶାସ୍ତ୍ରରେ ଭରତ ମଧ୍ୟ ଏ ଦଶଗୁଣର ନାମ ଉଲ୍ଲେଖ କରିଛନ୍ତି । ବାମନଙ୍କ ମତରେ— "ରୀତିରାତ୍ମା କାବ୍ୟସ୍ୟ ବିଶିଷ୍ଟା ପଦରଚନା ରୀତିଃ, ବିଶେଷ ଗୁଣ ଆତ୍ମା"—ଅର୍ଥାତ୍ ବିଶେଷ ଗୁଣର ନାମ ହେଉଛି ଆତ୍ମା ଏବଂ ବିଶିଷ୍ଟ ପଦରଚନା ହେଉଛି ରୀତିଃ । ଏହି ରୀତି କେବଳ କାବ୍ୟର ଆତ୍ମା । ସେ ବୈଦର୍ଭୀ, ଗୌଡ଼ୀୟା ଓ ପାଞ୍ଚାଳୀ—ଏହି ରୀତି ତିନୋଟିର କଥା ଉଲ୍ଲେଖ କରି କହନ୍ତି, ପୂର୍ବକଥିତ ଦଶଟିଯାକ ଗୁଣ ବୈଦର୍ଭୀ ରୀତିରେ ଦେଖିବାକୁ ମିଳେ । ଗୌଡ଼ୀୟା ରୀତିରେ ଓଜଃ ଓ କାନ୍ତି ଏବଂ ପାଞ୍ଚାଳୀରେ ମାଧୁର୍ଯ୍ୟ ଓ ସୌକୁମାର୍ଯ୍ୟ ଗୁଣର ପ୍ରାଧାନ୍ୟ ବିଦ୍ୟମାନ । ଶକୁନ୍ତଳା ନାଟକର "ଗାହନ୍ତାଂ ମହିଷାଃ" ( ୨ ଅ: ୬ ଶ୍ଳୋକ ) ଶ୍ଳୋକ ଉଦ୍ଧାର କରି ତାହା ବୈଦର୍ଭୀ ରୀତିର ଶ୍ରେଷ୍ଠ ଦୃଷ୍ଟାନ୍ତ ରୂପେ ପ୍ରତିପାଦିତ କରିଛନ୍ତି ।

ଏ ସମ୍ପର୍କରେ ଅଉ ଏକ କଥା କହିବା ଦରକାର ଯେ ଅନେକ ଗୁଣର ଲକ୍ଷଣ ଉପରେ, ଦଣ୍ଡୀ ଓ ବାମନ ଭିନ୍ନ ଭିନ୍ନ ରୂପେ ନିର୍ଦ୍ଦେଶ କରିଛନ୍ତି । 'ଓଜଃ' ଗୁଣର ଲକ୍ଷଣ ନାଟ୍ୟଶାସ୍ତ୍ରରେ ଏବଂ କାବ୍ୟାଦର୍ଶରେ ଭିନ୍ନ ପ୍ରକାରରେ ନିର୍ଦ୍ଦେଶ କରି ଯାଇଛି । ସମାଧି ଗୁଣର ଲକ୍ଷଣରେ ନାଟ୍ୟଶାସ୍ତ୍ର ଓ କାବ୍ୟାଳଂକାର ସୂତ୍ର (ବାମନ) ମଧ୍ୟରେ ମତ-ପାର୍ଥକ୍ୟ ଦେଖାଯାଏ । ବାମନଙ୍କ ପରି ସ୍ୱକ-

ଘୋଷଙ୍କ ମତରେ ରୀତିର ସଂଖ୍ୟା ତିନି, କିନ୍ତୁ 'ରୁଦ୍ରଟ', 'ଲାଟୀୟା' ନାମକ ଆଉ ଏକ ରୀତିର ଉଲ୍ଲେଖ କରିଛନ୍ତି । ଦଣ୍ଡୀ ଓ ବାମନ କେବଳ ପ୍ରଥମ ଦୁଇଟି ରୀତି ସ୍ୱୀକାର କରନ୍ତି । କିନ୍ତୁ ଭୋଜଙ୍କ ମତରେ ବୈଦର୍ଭୀ ପ୍ରଭୃତି ତିନି ଓ ଆବନ୍ତୀ, ମାଗଧୀ, ଲାଟୀ ମିଶି ରୀତିର ସଂଖ୍ୟା ଛ ।

ରସାତ୍ମକ ବାଦୀମାନେ କହନ୍ତି ଯେ "ରୀତି"କୁ କାବ୍ୟର ଆତ୍ମା ରୂପେ ମାନିବା ଦ୍ୱାରା ଏମତବାଦୀମାନେ ପ୍ରକାରାନ୍ତରରେ ରସ-ବାଦ ସ୍ୱୀକାର କରନ୍ତି । ଗୁଣ ସମ୍ବଳିତ ରୀତି ଯେବେ କାବ୍ୟର ଆତ୍ମା ହୁଏ, ତେବେ ରସ ମଧ୍ୟ କାବ୍ୟର ଆତ୍ମା, ଯେହେତୁ ଗୁଣ ଗୁଡ଼ିକର ମୂଳ ରସରେ ସନ୍ନିବଦ୍ଧ । ମାଧୁର୍ଯ୍ୟର ଅଭିବ୍ୟକ୍ତି ଶୃଙ୍ଗାରରେ, ଓଜଃ ଗୁଣ ରୌଦ୍ର, ବୀର ଓ ଅଦ୍ଭୁତରେ ଉଚ୍ଛ୍ୱସିତ ଏବଂ ପ୍ରସାଦ ଗୁଣ ପ୍ରାୟ ସବୁ ରସରେ ସମାନ । ନାଟ୍ୟଶାସ୍ତ୍ରର "ଦଶଗୋଟି" ଗୁଣ ବାସ୍ତବରେ ମାଧୁର୍ଯ୍ୟ, ଓଜଃ ଓ ପ୍ରସାଦ—ଏ ତିନିଗୁଣର ରୂପାନ୍ତର ବୋଲି ଭାମହ, ମମ୍ମଟ ଓ ହେମଚନ୍ଦ୍ର ପ୍ରଭୃତିଙ୍କର ମତ ।

## ୪ । ବକ୍ରୋକ୍ତି ହେଉଛି କାବ୍ୟର ଆତ୍ମା :—

ଏ ମତବାଦ ଅଳଂକାରବାଦୀମାନଙ୍କ ମତଠାରୁ ବିଶେଷ ପୃଥକ୍ ନୁହେଁ । କୁନ୍ତକ, ଭାମହ ଓ ଦଣ୍ଡୀ ଏ ବାଦର ପ୍ରତିଷ୍ଠା କରିଛନ୍ତି । କୁନ୍ତକଙ୍କ ମତରେ ବକ୍ରୋକ୍ତି ହେଉଛି, "ବୈଦଗ୍ଧ୍ୟଭଙ୍ଗୀ ଭଣିତଃ" ଅର୍ଥାତ୍ ବିଦଗ୍ଧତା ସମ୍ବଳିତ ରଚନା । ଏହା-ପ୍ରତିଭା ଏହାର ମୂଳ ବୋଲି ସେ ସ୍ଥିର କରିଛନ୍ତି । ଭାମହଙ୍କ ମତରେ ପ୍ରତ୍ୟେକ ଅଳଂ-କାରରେ ବକ୍ରୋକ୍ତି ଥିବା ଆବଶ୍ୟକ । ଦଣ୍ଡୀ ସ୍ୱଭାବୋକ୍ତିର ବୈପରୀ-ତ୍ୟରେ ବକ୍ରୋକ୍ତିର ସାରବତ୍ତା ପ୍ରତିପାଦନ କରିଛନ୍ତି । ଏ ମତବାଦ

ଅନୁସାରେ, ସାଧାରଣ ଲୋକର ଅଭିବ୍ୟକ୍ତି ଭଙ୍ଗୀଠାରୁ କବିର ଭଙ୍ଗୀ ଭିନ୍ନ ଏବଂ ଏହା କେବଳ ବକ୍ରୋକ୍ତିର ମୂଳଭିତ୍ତି । ଯେପରି କାବ୍ୟରେ ଓ ଅଭିବ୍ୟକ୍ତିରେ କବି ପ୍ରତିଭା ଜନିତ ଚମତ୍କୃତି ନ ଥିଲେ ତାହା କାବ୍ୟ ହୋଇ ପାରିବ ନାହିଁ । ଅତଏବ କାବ୍ୟର ଆତ୍ମା ହେଉଛି ବକ୍ରୋକ୍ତି । ରୁଦ୍ରଟଙ୍କ ମତରେ କିନ୍ତୁ ବକ୍ରୋକ୍ତି ହେଉଛି ଏକପ୍ରକାର ଶବ୍ଦାଳଙ୍କାର । ମମ୍ମଟ, ବାଗ୍‌ଭଟ, ( କାବ୍ୟାନୁଶାସନ ) ଓ ହେମଚନ୍ଦ୍ର ପ୍ରଭୃତି କେତେ ଜଣ ଏ ସମ୍ପର୍କରେ ରୁଦ୍ରଟଙ୍କ ସହିତ ଏକମତ । ରୁଯ୍ୟକଙ୍କ ମତରେ ବକ୍ରୋକ୍ତି ଅର୍ଥାଳଙ୍କାର ବିଶେଷ ମାତ୍ର ।

### ୪ । ଧ୍ୱନି କେବଳ କାବ୍ୟର ଆତ୍ମା :—

ଆନନ୍ଦବର୍ଦ୍ଧନ କେବଳ ଏ ମତବାଦର ପ୍ରତିଷ୍ଠା ପାଇଁ ଧ୍ୱନ୍ୟାଲୋକ ଲେଖିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ରସାତ୍ମବାଦ ଖଣ୍ଡନ କରିବାକୁ ଯାଇ କହିଛନ୍ତି ଯେ ତାହାର ପରିସର ସଙ୍କୀର୍ଣ୍ଣ । ନାଟ୍ୟ-କାବ୍ୟରେ ବିଭାବ ଅନୁଭାବର ସାହଚର୍ଯ୍ୟରେ ରସର ଉଦ୍ରେକ କରିବାକୁ ହୁଏ । ତେଣୁ ସେ ଦୃଷ୍ଟିରୁ ରସର ଶ୍ରେଷ୍ଠତ୍ୱ କେତେକ ପରିମାଣରେ ସ୍ୱୀକାର କରାଯାଇ ପାରେ । ନାଟ୍ୟ ଶାସ୍ତ୍ର ପ୍ରଣାଳୀରେ ରସୋଦ୍ରେକ ଲାଗି କାବ୍ୟ ଟିକିଏ ଲମ୍ବା ହେବା ଦରକାର କିନ୍ତୁ ଯଦି ଗୋଟିଏ କ୍ଷୁଦ୍ର ବାକ୍ୟ ମଧ୍ୟ ରଚନା ବୈଚିତ୍ର୍ୟରୁ ପାଠକ ବା ଶ୍ରୋତାର ରସୋପଲବ୍ଧିରେ ସକ୍ଷମ ହୁଏ, ତେବେ କଣ ତାହା କାବ୍ୟରୂପେ ପରିଗୃହୀତ ହେବ ନାହିଁ ? ଅତଏବ ରସାତ୍ମବାଦ ସ୍ଥଳ ବିଶେଷରେ ବଳବତ୍ତର ହେଲେ ମଧ୍ୟ ସଂକୀର୍ଣ୍ଣ ବେଷ୍ଟନୀରେ ଆବଦ୍ଧ । ଏ ସବୁର ବିଚାର କରି ଧ୍ୱନ୍ୟାଲୋକ କହେ ଯେ ବ୍ୟଞ୍ଜନା [ ବ୍ୟଙ୍ଗ୍ୟ ] ବା ଧ୍ୱନି ହେଉଛି ବାସ୍ତବରେ କାବ୍ୟର ଆତ୍ମା ।

ଧ୍ୱନ୍ୟାଲୋକର ବିଖ୍ୟାତ ଟୀକା ଲୋଚନରେ, ଏ ବାଦ ବଡ଼ ତାର୍କିକ ଭଙ୍ଗୀରେ ଉପରେ ପ୍ରତିଷ୍ଠିତ, ତାହା ବିଶଦ ଭାବରେ ଆଲୋଚିତ ହୋଇଛି । ଲୋଚନରେ କୁହାଯାଇଛି ଯେ ପ୍ରାୟୁଜ୍ୟତ ଶବ୍ଦରୁ ଓ ବାକ୍ୟରୁ ଶ୍ରମ ସ୍ୱୀକାର କଲେ ପର୍ଯ୍ୟନ୍ତ କିଛି ନା ଭଲି ବ୍ୟଙ୍ଗ୍ୟ ବାହାର କରି ହେବ, ତଥାପି କେବଳ ସେହି ଶବ୍ଦ ସମଷ୍ଟି, ଯାହା କେତେକ ବିଶିଷ୍ଟ ଗୁଣଯୁକ୍ତ, ସ୍ୱତ ଅନୁସୃତ ପନ୍ଥାରେ ବ୍ୟଞ୍ଜନା-ସମ୍ବଳିତ ହୋଇ ପ୍ରକାଶ ପାଏ, ତାହା ବାସ୍ତବରେ କାବ୍ୟ ନାମର ଯୋଗ୍ୟ ।

ଧ୍ୱନ୍ୟାଲୋକ ମତରେ ଧ୍ୱନି, ଗୁଣୀଭୂତ ବ୍ୟଙ୍ଗ୍ୟ ଓ ଚିତ୍ର ଭେଦରେ କାବ୍ୟ ତିନି ପ୍ରକାର । ଚିତ୍ର ମଧ୍ୟରେ ସମସ୍ତ ଶବ୍ଦ ଓ ଅର୍ଥାଲଙ୍କାର ଗର୍ଭିତ ବୋଲି ତାଙ୍କର ମତ । ସ୍ୱତ ଗୁଣଙ୍କ ଗୁଣରେ ପର୍ଯ୍ୟବସିତ ବୋଲି ଲୋଚନର ମତ । 'ରସଗଙ୍ଗାଧର' "ଧ୍ୱନିକୃତାମାଲଙ୍କାରିକ ସରଣିଃ—ବ୍ୟବସ୍ଥାପକ ତ୍ୱାତ୍" ପ୍ରଭୃତି ଲେଖିଥିବାରୁ ସେ ମଧ୍ୟ ଏ ବାଦ ସ୍ୱୀକାର କରୁଛନ୍ତି ବୋଲି ଅନେକଙ୍କର ବିଶ୍ୱାସ । ପ୍ରତିହାରେନ୍ଦୁରାଜ, ଭଟ୍ଟନାୟକ ଓ ମହିମଭଟ୍ଟ ଏ ଧ୍ୱନ୍ୟାତ୍ମବାଦର ବଡ଼ କଡ଼ା ସମାଲୋଚନା କରିଛନ୍ତି । ଅଳ୍ପ କେତେ ବର୍ଷ ତଳେ ସ୍ୱର୍ଗତ ପୁରୀର ବିଖ୍ୟାତ ପଣ୍ଡିତ ମଧୁସୂଦନ ତର୍କ ବାଚସ୍ପତି ଧ୍ୱନ୍ୟାଲୋକ ଉପରେ ଏକ ପାଣ୍ଡିତ୍ୟପୂର୍ଣ୍ଣ ଟୀକା ଲେଖିଛନ୍ତି । ତାହା ମୁଦ୍ରିତ ଓ ପଣ୍ଡିତ ସମାଜରେ ସମ୍ମାନିତ ହୋଇ ପାରିଛି ।

**କାବ୍ୟ ବିଭାଗ :—**

କାବ୍ୟର କି କି ପ୍ରଧାନ ବିଭାଗ କରିଯାଇ ପାରେ ଏବଂ କାବ୍ୟର କାବ୍ୟତ୍ୱ ଯେ କଣ, ସେ ବିଷୟରେ ଅଳଙ୍କାର ଶାସ୍ତ୍ରର

ମତ ସମସ୍ତ ଜଗତରେ କାବ୍ୟ-ତତ୍ତ୍ୱବେତ୍ତାମାନଙ୍କ ପକ୍ଷେ ଏକ ଶଙ୍କା-
ମୂଳକ ସମସ୍ୟା । ଅଜ ବଂଶ ଶତାବ୍ଦୀରେ, ବସ୍ତୁମାତ୍ରତ୍ୟର ଏତେ
ପ୍ରସାର ଓ ଉନ୍ନତ କାଳରେ ସାଧୁନିକ ସମାଲୋଚନା ଓ ବୈଜ୍ଞାନିକ
ବିଶ୍ଳେଷଣର ଏ ଚରମ ଉତ୍କର୍ଷ ସମୟରେ, କାବ୍ୟ ବିଷୟରେ
ଯାହା ବିଶେଷ ସିଦ୍ଧାନ୍ତ ବୋଲି ପ୍ରାଚ୍ୟପାଶ୍ଚାତ୍ୟ ବିଦ୍ୱଜ୍ଜନମଣ୍ଡଳୀ
ସ୍ୱୀକାର କରନ୍ତି, ତାହା ତଥାକଥିତ ମରହଟ୍ଟୀ ପଣ୍ଡିତମାନେ
ବହୁଦିନରୁ ସିଦ୍ଧାନ୍ତ କରି ସାରିଛନ୍ତି । କାବ୍ୟ ପାଇଁ ଯେ ଛନ୍ଦୋ-
ବନ୍ଧନ ଅପରିହାର୍ଯ୍ୟ ଏ କଥା ସ୍ୱୀକାର କରାଯାଇ ନାହିଁ । ଛନ୍ଦୋ-
ବଦ୍ଧ ନ ହୋଇ ମଧ୍ୟ ଯେତେବେଳେ କୌଣସି ପଦସମଷ୍ଟି ରସୋଦ୍ରେକ
କରିପାରେ, ପାଠକକୁ କ୍ଷଣକାଳ ନିମିତ୍ତ ଊର୍ଦ୍ଧ୍ୱରେ ଅଭିଭୂତ କରି-
ପାରେ, ଆନନ୍ଦର ନିର୍ଝରିଣୀ ତାହାର ହୃଦୟରେ ପ୍ରବାହିତ କରାଇ
ଦିଏ, ସେତେବେଳେ ତାହା କାବ୍ୟରୂପେ ସର୍ବଥା ଗ୍ରହଣ କରିବାକୁ ହେବ ।
Shelly ଙ୍କର 'Poetry is emotions recollected in
tranquillity'ରେ ଏହି ଆଦର୍ଶ ରହିଛି । ଦଣ୍ଡୀ, ଭାମହ ଓ
ହେମଚନ୍ଦ୍ର ପ୍ରଭୃତିଙ୍କ ମଧ୍ୟରେ ଯଦ୍ୟପି କାବ୍ୟର ପ୍ରଧାନ ବିଭାଗ
ସମ୍ପର୍କରେ ମତଭେଦ ଦେଖାଯାଏ, ତଥାପି ଗଦ୍ୟ, ପଦ୍ୟ ଓ ନାଟ୍ୟ,
ଏହିପରି ଭେଦ ସମସ୍ତେ ମାନନ୍ତି । ପ୍ରାଚୀନ ପଣ୍ଡିତମାନେ
ଗଦ୍ୟକୁ ହେୟଜ୍ଞାନ କରୁଥିଲେ ବୋଲି ଆଧୁନିକ ଶିକ୍ଷିତ
ସମାଜରେ ଯେଉଁ ଧାରଣା ପରମ୍ପରା ବିଦ୍ୟମାନ, ତାହା ଗଦ୍ୟ-
ଗ୍ରନ୍ଥର ବିରଳତା ଦ୍ୱାରା ହୁଏତ କେତେକ ପରିମାଣରେ ସମର୍ଥିତ
ହୁଏ । ତଥାପି ମତବାଦଠାରୁ କର୍ମ-ସରଣୀ ଭିନ୍ନ ରହିବା ସର୍ବତ୍ର
ଦେଖାଯାଏ । ଅତଏବ ମତବାଦର ଯାଥାର୍ଥ୍ୟ ସର୍ବଦୌ ଆଲୋଚ୍ୟ ।
ବାମନଙ୍କ ମତରେ, "ଗଦ୍ୟଂ କବୀନାଂ ନିକଷଂ ବଦନ୍ତି" ଅର୍ଥାତ୍
ଗଦ୍ୟ ହେଉଛି କାବ୍ୟ-କନକର କଷଟି ପଥର । ଗଦ୍ୟର ନାନା-

ବିଭାଗ କରାଯାଇଛି । ହେମଚନ୍ଦ୍ର କେବଳ 'କଥା'ର ନଅ ଗୋଟି ବିଭାଗ କରିଛନ୍ତି, ଯଥା:—ଆଖ୍ୟାନ, ନିଦର୍ଶନ, ପ୍ରବହ୍ଲିକା, ମତଲ୍ଲିକା, ମଣିକୁଲ୍ୟା, ପରିକଥା, ଖଣ୍ଡକଥା, ସକଳକଥା ଓ ଉପ-କଥା, ଅନ୍ୟ ବିଭାଗଗୁଡ଼ିକର ମଧ୍ୟ ଏପରି ବିଶ୍ଳେଷଣ ମୂଳକ ଭେଦ କରାଯାଇଛି ।

### ଗଦ୍ୟଗ୍ରନ୍ଥର ବିରଳତା:—

ଯେବେ କୁହାଯାଏ ଅଳଂକାର ଶାସ୍ତ୍ରରେ ଗଦ୍ୟର ସ୍ଥାନ ଏତେ ଉଚ୍ଚରେ ନିରୂପିତ ହୋଇଛି, ତେବେ ପ୍ରଶ୍ନ ଉଠେ, ସଂସ୍କୃତ ସାହିତ୍ୟରେ ଏତେ କମ୍ ଗଦ୍ୟ-ଗ୍ରନ୍ଥ କାହିଁକି ଲେଖାଯାଇଥିଲା । ଏହାର କାରଣ ଗଦ୍ୟର ଅନାଦର ନୁହେଁ । ଯେଉଁ ସମୟରେ ମୁଦ୍ରାଯନ୍ତ୍ର ପ୍ରଭୃତିର ଅଭାବରେ ସବୁ ପ୍ରାୟ ମୁଖସ୍ଥ କରିବାକୁ ପଡ଼ୁଥିଲା । ପୁଣି ପାଣ୍ଡିତ୍ୟ, ଜୀବନର ଏକ ମହନୀୟ ଆଦର୍ଶ ( କେବଳ ଅର୍ଥାଗମର ପନ୍ଥାରୂପେ ନୁହେଁ ) ରୂପେ ଗୃହୀତ ହୋଇଥିବାରୁ, ପଣ୍ଡିତମାନେ ଶାସ୍ତ୍ର ସବୁ କଣ୍ଠସ୍ଥ କରିବାରେ ଉଦ୍ୟତ ଥିଲେ । ଗଦ୍ୟରେ ଲାଳିତ୍ୟ-ପ୍ରକଟନ ଅପେକ୍ଷାକୃତ କଷ୍ଟ । ଯେଉଁମାନେ କାଦମ୍ବରୀ ପଢ଼ିଛନ୍ତି, ଜାଣିବେ ଲେଖା କିପରି ସରସ ଓ ପଢ଼ିବାବେଳେ କିପରି ପଦ୍ୟଠାରୁ ମଧ୍ୟ ଅଧିକ ଜୀବନ୍ତ, ତରଳ ଜଣାଯାଏ, କିନ୍ତୁ କେତେଜଣ ସେପରି ଲେଖି ପାରିବେ ? ଏହି କେତେ ଗୋଟି କାରଣରୁ ପଦ୍ୟର ଅଭ୍ୟାସ ନେବା ଯେ କେବଳ ବୁଦ୍ଧିମତ୍ତାର କାର୍ଯ୍ୟ ଥିଲା, ତାହା ନୁହେଁ, ଅପରିହାର୍ଯ୍ୟ ମଧ୍ୟ ଥିଲା ।

---

# ତୃତୀୟ ପରିଚ୍ଛେଦ

ଅଲଂକାର ଶାସ୍ତ୍ରର ଉତ୍ପତ୍ତି ସମ୍ପର୍କରେ ରାଜଶେଖର ସ୍ୱୀୟ କାବ୍ୟମୀମାଂସାରେ ଏକ କାହାଣୀ ଦେଇଛନ୍ତି । ତାଙ୍କର କାହାଣୀ କେତେଦୂର ସତ୍ୟ, ଏ ପର୍ଯ୍ୟନ୍ତ ସ୍ଥିର ହୋଇନାହିଁ । ତହିଁରୁ ଜଣାଯାଏ, ଅଲଂକାର ଶାସ୍ତ୍ର ପ୍ରଥମେ ଶିବ, ବ୍ରହ୍ମାଙ୍କୁ ଉପଦେଶ ଦେଇଥିଲେ ଏବଂ ବ୍ରହ୍ମା ଅଠର ଅଧିକରଣରେ ତାହା ବିଭକ୍ତ କରି ଅଠର ଜଣ ଶିଷ୍ୟଙ୍କୁ ଶିକ୍ଷାଦାନ କରିବା ଫଳରୁ ସେମାନଙ୍କ ଦ୍ୱାରା ସେଦଂକୁ ଜଗତରେ ପ୍ରଚାରିତ ହେଲା । ନିମ୍ନରେ ବିଭିନ୍ନ ବିଭାଗ ଓ ପ୍ରଚାରକଙ୍କ ନାମ ପ୍ରଦତ୍ତ ହେଲା :—

| ଅଧିକରଣ | ପ୍ରଚାରକଙ୍କ ନାମ |
|---|---|
| କବିରହସ୍ୟ | ସହସ୍ରାକ୍ଷ |
| ଔକ୍ତିକ | ଉକ୍ତିଗର୍ଭ |
| ରୀତିନିର୍ଣ୍ଣୟ | ସୁବର୍ଣ୍ଣ ନାଭ |
| ଆନୁପ୍ରାସିକ | ପ୍ରଚେତା |
| ଚିତ୍ର | ଚିତ୍ରାଙ୍ଗଦ |
| ଶବ୍ଦ ଶ୍ଳେଷ | ଶେଷ |
| ବାସ୍ତବ | ପୁଲସ୍ତ୍ୟ |
| ଔପମ୍ୟ | ଔପକାୟନ |
| ଅତିଶୟ | ପାରାଶର |
| ଅର୍ଥଶ୍ଳେଷ | ଉତଥ୍ୟ |
| ଉଭୟାଳଂକାରିକ | କୁବେର |

| | |
|---|---|
| ବୈନୋଦିକ | କାମଦେବ |
| ରୂପକନିରୂପଣୀୟ | ଭରତ |
| ରସାଧିକାରିକ | ନନ୍ଦିକେଶ୍ୱର |
| ଦୋଷାଧିକାରିକ | ଧିଷଣ |
| ଗୁଣୌପାଦାନିକ | ଉପମନ୍ୟୁ |
| ଔପନିଷଦିକ | କୁଚୁମାର |
| ଯମକ | ଯମ |

## ବିବରଣୀର ବିଗ୍ରହ:—

କେତେକଙ୍କ ମତରେ ଏ ନାମ ତଥା ଅଧିକରଣଗୁଡ଼ିକ କଳ୍ପିତ। ପ୍ରଥମ କଥା ଏହି ଯେ ଯେବେ ଏପରି ଧାରାବାହିକ ଇତିହାସ ଥାଆନ୍ତା, ତେବେ ରାଜଶେଖରଙ୍କ ପରବର୍ତ୍ତୀ ଏତେ ଲେଖକଙ୍କ ମଧ୍ୟରୁ ଜଣେ ସୁଦ୍ଧା କାହିଁକି ଏସବୁ ବିଷୟରେ ଅଳଂକାରର ଉତ୍ପତ୍ତି ନିର୍ଦ୍ଦେଶ କରି ନ ଥାନ୍ତେ। ଦ୍ୱିତୀୟରେ ରାଜଶେଖର ଜଣେ ଭଲ ଅଳଂକାରିକ ତଥା କବି ଥିଲେ। ମିଥ୍ୟାକଥାକୁ ଜୀବନ୍ତ ରୂପରେ ବ୍ୟକ୍ତ କରିବାରେ ସେ ଧୁରନ୍ଧର। ଅବଶ୍ୟ ଉକ୍ତ ମିଥ୍ୟାର ନାମାନ୍ତର କବି କଳ୍ପନା। କାବ୍ୟପୁରୁଷ ଓ ସାହିତ୍ୟବିଦ୍ୟାବଧୂଙ୍କର ବସ୍ତ୍ରଗୁଳ୍ମ ନଗରରେ ବିବାହ କଥା ଯେପରି ଜୀବନ୍ତ ଭାବରେ ବର୍ଣ୍ଣନା କରିଛନ୍ତି, ପାଠକ କ୍ଷଣକାଳ ପର୍ଯ୍ୟନ୍ତ ତହିଁରେ ବିଶ୍ୱାସ ନ କରି ରହି ପାରେ ନାହିଁ। କିନ୍ତୁ ଅନ୍ୟ ପକ୍ଷରେ ଦେଖିବାକୁ ଗଲେ, ଉଲ୍ଲିଖିତ କେତେ ଜଣ ଗୁରୁଙ୍କ ନାମ ଅନ୍ୟ ଅନେକ ପ୍ରସିଦ୍ଧ ଗ୍ରନ୍ଥରେ ଦେଖିବାକୁ ମିଳେ। ଉଦାହରଣ ସ୍ୱରୂପ କୁହା ଯାଇ ପାରେ, ବାତ୍ସାୟନ କାମସୂତ୍ରରେ 'ସାଂପ୍ରୟୋଗିକ', ଅଧିକରଣର ଗ୍ରନ୍ଥ ରୂପେ କୁଚୁମାରଙ୍କ ନାମୋଲ୍ଲେଖ ହୋଇଛି। ପୁଣି ସପ୍ତଦଶ ଗୁରୁ

ଭରତଙ୍କର ନାଟକ ବିଷୟକ ପ୍ରକାଣ୍ଡ ଗ୍ରନ୍ଥ ଅଦ୍ୟାପି ରହିଛି । ଏଣୁ ରାଜଶେଖରଙ୍କ ଉକ୍ତି ଅସତ୍ୟ ବା ଅମୂଳକ ବୋଲି ନିର୍ଦ୍ଦିଷ୍ଟ ଭାବରେ କହି ହେବ ନାହିଁ ।

## ନାଟ୍ୟଶାସ୍ତ୍ର—ଭରତ

ସଂସ୍କୃତ ସାହିତ୍ୟରେ ଭରତଙ୍କ ନାଟ୍ୟଶାସ୍ତ୍ର ଏକ ପ୍ରଧାନ ଗ୍ରନ୍ଥ । ଏ ଗ୍ରନ୍ଥର ପ୍ରଣେତା କିଏ, ସେ ବିଷୟରେ ମତଭେଦ ଦେଖାଯାଏ । ତେବେ ସ୍ଥୂଳ କଥା ହେଉଛି ଭରତ ମୁନି ଲୋକମାନଙ୍କର ଅନନ୍ଦ ଉପଭୋଗ ପାଇଁ ଏ ଗ୍ରନ୍ଥର ବିଷୟ-ବସ୍ତୁ ପ୍ରସ୍ତୁତ କରିଥିଲେ । ଏହା ୩୭ଟି ଅଧ୍ୟାୟରେ ବିଭକ୍ତ ଏବଂ ବିଭିନ୍ନ ଅଧ୍ୟାୟର ଶ୍ଳୋକ ସଂଖ୍ୟାରେ ବିଶେଷ ପାର୍ଥକ୍ୟ ଦେଖାଯାଏ । ଏଥର ଚତୁର୍ଦ୍ଦଶ ଅଧ୍ୟାୟର ଶ୍ଳୋକ ସଂଖ୍ୟା ମୋଟେ ୧୧ ହେବା ବେଳେ ଦ୍ୱାବିଂଶତ ଅଧ୍ୟାୟରେ ୪୭୩ ଶ୍ଳୋକ ଅଛି । ଷଷ୍ଠ, ସପ୍ତମ ଓ ସପ୍ତବିଂଶ ଅଧ୍ୟାୟରେ ବହୁ ଗଦ୍ୟାଂଶ ମଧ୍ୟ ଦେଖାଯାଏ । କିନ୍ତୁ ମୋଟ ଉପରେ ଗ୍ରନ୍ଥଟି ଅନୁଷ୍ଟୁପ୍ ଛନ୍ଦରେ ଲିଖିତ । ତଳେ ଅଧ୍ୟାୟ ଅନୁକ୍ରମରେ ସମଗ୍ର ଗ୍ରନ୍ଥର ଏକ ସଂକ୍ଷେପ ସୂଚୀ ପ୍ରଦତ୍ତ ହୋଇଛି । ଏଠାରେ ସାଲୋଚ୍ୟ ଦେବା ଉଚିତ ଯେ ନାଟ୍ୟଶାସ୍ତ୍ର ମୁଖ୍ୟତଃ ଏକ ନାଟକ ସମ୍ପର୍କୀୟ ଗ୍ରନ୍ଥ । ତଥାପି ଏ ଗ୍ରନ୍ଥକୁ ଅଳଂକାର ଶାସ୍ତ୍ରର ଇତିହାସରେ ସ୍ଥାନ ଦେବାର ଦୁଇଟି କାରଣ ଅଛି । (କ) ବର୍ତ୍ତମାନ ନାଟକ ତତ୍ତ୍ୱ ମଧ୍ୟ ଅଳଂକାର ଶାସ୍ତ୍ରର ଏକ ପ୍ରଧାନ ଅଙ୍ଗ ରୂପେ ପରିଗୃହୀତ ହେଲଣି, ଯାହା ସାହିତ୍ୟ-ଦର୍ପଣର ଷଷ୍ଠ ଅଧ୍ୟାୟରୁ ସ୍ପଷ୍ଟ ଜଣାଯାଏ । (ଖ) ଅଳଂକାର ଶାସ୍ତ୍ରର ପ୍ରଧାନ ଆଲୋଚ୍ୟ ବିଷୟ ରସ ଓ ଅଳଂକାର ବିଷୟରେ ମଧ୍ୟ ନାଟ୍ୟ ଶାସ୍ତ୍ରରେ ଲେଖା ଯାଇଛି । ପରବର୍ତ୍ତୀ ବିଷୟ ସୂଚୀରୁ ଜଣାପଡ଼ିବ, ଷଷ୍ଠ, ସପ୍ତମ, ଷୋଡ଼ଶ, ଅଷ୍ଟାଦଶ, ବିଂଶ ଓ ଦ୍ୱାବିଂଶ

ଅଧ୍ୟାୟମାନଙ୍କର ଅନ୍ତର୍ଗତ ବିଷୟ ପୂର୍ବପୂର୍ବ ଅଳଂକାର ଶାସ୍ତ୍ରର (ନାଟ୍ୟ ପ୍ରକରଣକୁ ଛାଡ଼ ମଧ୍ୟ) ଅନ୍ତର୍ଗତ । ନାଟ୍ୟଶାସ୍ତ୍ରର ବିଭିନ୍ନ ଅଧ୍ୟାୟରେ ଅନ୍ତର୍ଗତ ବିଷୟର ସୂଚୀ :—

ଶ୍ଳୋକସଂଖ୍ୟା

ଅର୍ଥନୀତି ସମ୍ପର୍କରେ କୌଟିଲ୍ୟଙ୍କ ଅର୍ଥ ଶାସ୍ତ୍ରର ସ୍ଥାନ ଓ ମର୍ଯ୍ୟାଦା ଯାହା, ନାଟ୍ୟ-ଗୀତ ସମ୍ବନ୍ଧରେ ଭରତଙ୍କ ନାଟ୍ୟଶାସ୍ତ୍ରର ଗୌରବ ମଧ୍ୟ ତାହା। ଅର୍ଥ ଶାସ୍ତ୍ରର ଅମାତ୍ୟୋତ୍ପତ୍ତି ଅଧ୍ୟାୟରେ ମନ୍ତ୍ରୀର ଯୋଗ୍ୟତା ଯେମିତି ଯେପରି ପୁଙ୍ଖାନୁପୁଙ୍ଖ ଆଲୋଚନା ହୋଇଛି ନାଟ୍ୟଶାସ୍ତ୍ରର ଚତୁର୍ତ୍ରିଂଶ ଅଧ୍ୟାୟରେ ନାଟକର ସୂତ୍ରଧାର ତଥା ବୀଣାଦୀନାଂ ବାଦ୍ୟମାନାନାଂ ମୃଦଙ୍ଗାଦିକମ୍ ବଂଶାଦିକନ୍ତୁ ସୁଷିରଂ କାଂସ୍ୟ ତାଳାଦିକଂ ଘନମ୍—ଅମରକୋଷ। ବୀଣା ପ୍ରଭୃତି ତତବାଦ୍ୟ,

ବଂଶୀ ପ୍ରଭୃତି ସୁଷିର, କରତାଳ ପ୍ରଭୃତି ଘନ ଓ ପଟହାଦି ପ୍ରଭୃତି ଆନଦ୍ଧ ବାଦ୍ୟ । ସୂତ୍ରଧାରର 'ଗୁଣ ବା ଯୋଗ୍ୟତା' କିମ୍ବା ଗୀତ ପ୍ରକାରରେ ଭରତ ନିର୍ଦ୍ଦେଶ କରିଅଛନ୍ତି:—ସୂତ୍ରଧାର ଚତୁର, ନାଟ୍ୟ-କୁଶଳ, ସୁବ୍ରତ ପ୍ରତିଷ୍ଠିତ, ନାନା ପାଷାଣ୍ଡ କାର୍ଯ୍ୟଜ୍ଞ, ନୀତିଶାସ୍ତ୍ରାର୍ଥ-ତତ୍ତ୍ୱବିତ୍, ବେଶ୍ୟୋପଚାରର ନିପୁଣ, କାବ୍ୟ ଶାସ୍ତ୍ର ବିଚକ୍ଷଣ, ନାନା ଗତି ପ୍ରଚାରଜ୍ଞ ରସଭାବ ବିଶାରଦ, ନାଟ୍ୟ ପ୍ରୟୋଗ କୁଶଳ, ନାନାଶିଳ୍ପ ସମନ୍ୱିତ, ଛନ୍ଦୋବିଧାନ ତତ୍ତ୍ୱଜ୍ଞ, ସର୍ବଶାସ୍ତ୍ର ବିଚକ୍ଷଣ, ଗ୍ରହ ନକ୍ଷତ୍ରତତ୍ତ୍ୱଜ୍ଞ, ଦେଶ-ବ୍ୟବହାର (ଭାଷା) ତତ୍ତ୍ୱବିଦ୍, ପୃଥିବୀ ଦ୍ୱୀପ, ଦେଶ, ପର୍ବତ, ଜନ-ପ୍ରମାଣାଗମ ତତ୍ତ୍ୱଜ୍ଞ, ରାଜ-ବଂଶ ପ୍ରସୂତିବିଦ୍ ହେବା ଆବଶ୍ୟକ ।

## ନାଟ୍ୟ ଶାସ୍ତ୍ରରେ ରସ-ପ୍ରସଙ୍ଗ :—

ଷଷ୍ଠ ଅଧ୍ୟାୟରେ ରସ ଓ ଭାବ ସମ୍ପର୍କୀୟ ଅନେକ କଥା ଆଲୋଚିତ ହୋଇଛି । ରସ ଗୁଡ଼ିକର ନାମୋଲ୍ଲେଖ କରିବାକୁ ଯାଇ ସେ କହୁଛନ୍ତି :—

> ଶୃଙ୍ଗାରହାସ୍ୟ କରୁଣ-ରୌଦ୍ରବୀରଭୟାନକାଃ
> ବୀଭତ୍ସାଦ୍‌ଭୁତ ସଂଜ୍ଞୌଚେତ୍ୟଷ୍ଟୌ ନାଟ୍ୟେରସାଃ ସ୍ମୃତାଃ

ଶୃଙ୍ଗାରାଦି ଯେଉଁ ନବରସର ଆଲୋଚନା ସାହିତ୍ୟଦର୍ପଣରେ ହୋଇଛି, ସେ ମଧ୍ୟରୁ କେବଳ ଶାନ୍ତରସ ଏଥିରେ ସ୍ଥାନ ପାଇ ନାହିଁ । ଉକ୍ତ ଅଧ୍ୟାୟରେ ରସମାନଙ୍କର ଅଧି ଦେବତା, କେଉଁ ରସରୁ କେଉଁ ରସର ଉତ୍ପତ୍ତି, ସେମାନଙ୍କ ବର୍ଣ୍ଣ ପ୍ରତ୍ୟେକର ସ୍ୱରୂପ ବା ଲକ୍ଷଣ ବଡ ନିର୍ମଳ ଭାବରେ ଲେଖା ଅଛି । ସଙ୍ଗୀତ ଶାସ୍ତ୍ରରେ ଯେଉଁ ରାଗ ରାଗିଣୀମାନଙ୍କର ଭିନ୍ନ ଭିନ୍ନ

ପ୍ରକାର ଥିବା ଯେପରି ବର୍ଣ୍ଣିତ ନାଟ୍ୟଶାସ୍ତ୍ରରେ ସେହିପରି ରସମାନଙ୍କର ବର୍ଣ୍ଣ କଥା ଲେଖାଯାଇଅଛି । ଶୃଙ୍ଗାର ରସର ବର୍ଣ୍ଣ ହେଉଛି ଶ୍ୟାମଳ, ହାସ୍ୟର ଶୁକ୍ଳ, କରୁଣର କପୋତ, ରୌଦ୍ରର ରକ୍ତ, ବୀରର ଗୌର, ଭୟାନକର କୃଷ୍ଣ, ବୀଭତ୍ସର ନୀଳ ଓ ଅଦ୍ଭୁତର ପୀତବର୍ଣ୍ଣ । ଆଧୁନିକ ବିଜ୍ଞାନ ବର୍ତ୍ତମାନ ଜଗତକୁ ଜଣାଇ ଦେଲାଣି, ସଙ୍ଗୀତ ଶାସ୍ତ୍ରର ବର୍ଣ୍ଣ ଓ ପ୍ରକାର ଯନ୍ତ୍ରବଳରେ କିପରି ଅଙ୍କିତ । କିନ୍ତୁ ରସର ବର୍ଣ୍ଣଚିତ୍ର ଏଠାରେ ଯେପରି ସମ୍ଭବ ତ, ତାହା ବର୍ତ୍ତମାନ ପର୍ଯ୍ୟନ୍ତ ଜଣାଯାଇ ନାହିଁ । ବୋଧହୁଏ ନିକଟ ଭବିଷ୍ୟତରେ ଏ ତତ୍ତ୍ୱ ଉଦ୍‌ଘାଟିତ ହୋଇ ହିନ୍ଦୁ-ସଭ୍ୟତାର ଅତୀତ ଉଜ୍ଜ୍ୱଳ ସ୍ମୃତିକୁ ଉଜ୍ଜ୍ୱଳତର କରି ପାରିବ । ପ୍ରତ୍ୟେକ ରସର ଲକ୍ଷଣ ଗଦ୍ୟରେ ସୁନ୍ଦର ଭାବେ ବୁଝାଇ ଦିଆ ଯାଇଛି । ଗଦ୍ୟ ସାହିତ୍ୟର ଇତିହାସରେ ଉକ୍ତ ଗଦ୍ୟାଂଶ ଗୁଡ଼ିକର ମୂଲ୍ୟ କେତେ ଯେ ଅଧିକ ତାହା ଅନୁସନ୍ଧିତ୍ସୁ ଓ ଇତିହାସ ବିତ୍ସବଦ୍ ଛଡ଼ା ଅନ୍ୟ କେହି ସହଜରେ ବୋଧହୁଏ ହୃଦୟଙ୍ଗମ କରି ପାରିବ ନାହିଁ ।

## ନାଟ୍ୟ ଶାସ୍ତ୍ରରେ "ଭାବ" ବିଚାରः—

ସପ୍ତମ ଅଧ୍ୟାୟରେ ନାଟ୍ୟଶାସ୍ତ୍ରଗତ 'ଭାବ'ର ବିଚାର ହୋଇଛି । ଗୋଟିଏ କଥା ଦେଖିଲେ ବିସ୍ମିତ ହେବାକୁ ପଡ଼େ । ଅନେକ ଟୀକା ପ୍ରଣାଳୀରେ ପ୍ରତ୍ୟେକ କଥା ସୁବୋଧ୍ୟ ପ୍ରଣାଳୀରେ ବୁଝାଇଲା ପରି ଏବଂ ସଂସ୍କୃତସାହିତ୍ୟ-ସୁଲଭ, କାଠିନ୍ୟସମ୍ବଳିତ ଵନ୍ତୁ ଅଭିବ୍ୟକ୍ତ ସ୍ଥଳ ଏତେ ପ୍ରାଚୀନ ଗ୍ରନ୍ଥରେ ମଧ୍ୟ ଗଦ୍ୟରେ ଲିଖିତ ହୋଇଛି :—"ଭାବାନିଦାନୀଂ ବକ୍ଷାମଃ—କିଂ ଭାବୟନ୍ତୀତି ଉଚ୍ୟତେ—ବାଗଙ୍ଗସତ୍ତ୍ୱୋପେତାନ୍ କାବ୍ୟାର୍ଥାନ୍ ଭାବୟନ୍ତୀତି ଭାବାଃ । ଭୂଇତି କରଣେ ଧାତୁଃ । ଭାବିତଂ କୃତମିତ୍ୟନ-

ର୍ଥାନ୍ତରମ୍ । ଲେଖେଦିତ......ରସେନ ବା ସର୍ବମେବ ଭାବଲ-
ମିତ । ନାଟ୍ୟଶାସ୍ତ୍ରର ବହୁ ସ୍ଥଳରେ ଗୋଟିଏ କଥା ବୁଝାଇବା-
ବେଳେ ସୁନ୍ଦର ସୁନ୍ଦର ଉପମା ମଧ୍ୟ ଦିଆ ଯାଇଅଛି, ଯେଉଁଥିରୁ
ଲେଖକଙ୍କର କବିତ୍ୱର ମଧ୍ୟ ପରିଚୟ ମିଳେ । ସ୍ଥାୟୀଭାବ ଅନ୍ୟ
ସବୁ ଭାବଙ୍କ ମଧ୍ୟରେ କିପରି ଶ୍ରେଷ୍ଠ, ସେକଥା ବୁଝାଇବାକୁ ଯାଇ
ଲେଖକ ଲେଖିଛନ୍ତି :—

"ଯଥା ନରାଣାଂ ନୃପତିଃ ଶିଷ୍ୟାଣାଂଚ ଯଥାଗୁରୁଃ
ଏବଂହି ସର୍ବଭାବାନାଂ ଭାବଃ ସ୍ଥାୟୀ ମହାନିହ ।"

ଅର୍ଥାତ୍ ଲୋକଙ୍କ ମଧ୍ୟରେ ରଜାଙ୍କ ପରି, ଶିଷ୍ୟଙ୍କ ମଧ୍ୟରେ ଗୁରୁଙ୍କ
ତୁଲ୍ୟ ସବୁ ଭାବ ମଧ୍ୟରେ ସ୍ଥାୟୀଭାବ ପ୍ରଧାନ । ଉକ୍ତ ଅଧ୍ୟାୟରେ
ନିମ୍ନଲିଖିତ କ୍ରମରେ ଭାବମାନଙ୍କର ଆଲୋଚନା ହୋଇଛି ।
କ୍ରମ—ନିର୍ବେଦ, ଗ୍ଳାନି, ଶଙ୍କା, ଅସୂୟା, ମଦ, ଶ୍ରମତା, ଆଲସ୍ୟ
ଦୈନ୍ୟ, ଚିନ୍ତା, ମୋହ, ସ୍ମୃତି, ଧୃତି, ବ୍ରୀଡ଼ା, ଚପଳତା, ହର୍ଷ,
ଆବେଗ, ଜଡ଼ତା, ଗର୍ବ, ବିଷାଦ, ଔତ୍ସୁକ୍ୟ, ନିଦ୍ରା, ଅପସ୍ମାର,
ସୁପ୍ତି, ବିବୋଧ, ଅମର୍ଷ, ଅବହିତ୍ଥ (ଆକାର ଗୋପନ), ଉଗ୍ରତା
ମତି, ବ୍ୟାଧି, ଉନ୍ମାଦ, ମରଣ, ତ୍ରାସ, ବିତର୍କ—ଏ ତେତିଶଟିରୁ
ପ୍ରତ୍ୟେକଟିର ଲକ୍ଷଣ ଗଦ୍ୟରେ ହୋଇଛି ଓ ପ୍ରତ୍ୟେକର ଭେଦ
ମଧ୍ୟ ନିର୍ମଳରେ ବୁଝାଇ ଦିଆଯାଇଛି ।

**ନାଟ୍ୟ ଶାସ୍ତ୍ରରେ ଶବ୍ଦାଳଙ୍କାରः—**

ଷୋଡ଼ଶ ଅଧ୍ୟାୟରେ କାବ୍ୟ ବିଷୟରେ ବହୁତ କଥା
ଉଦାହରଣ ସହ ଆଲୋଚନା ହୋଇଛି । ଶବ୍ଦାଳଙ୍କାର ମଧ୍ୟରୁ
କେତୋଟିର ନିମ୍ନରେ ଉଦାହରଣ ଦିଆଯାଇଛି । କବିଙ୍କ ଶ୍ଳୋକ-
ରଚନା ଶକ୍ତିର ପରିଚୟ ଏଥିରୁ ମିଳିବ ।

ପଦାନ୍ତ ଯମକ —

"ଘନକ୍ଷୟାତ୍ ସଦୃଶ ରଶ୍ମି ମଣ୍ଡଳଂ
ଶବ୍ଦବଲଗ୍ନଂ ନୃପଜୀସ୍ୟ ମଣ୍ଡଳମ୍
ବଭୂବ ତାମ୍ରଂ ଦବ ସୂର୍ଯ୍ୟମଣ୍ଡଳଂ
ଯଥା ତରୁଣ୍ୟା ସ୍ତନଭାର ମଣ୍ଡଳମ୍ ।"

ମାଳାଯମକ:—

"ହଳୀ, ବଳୀ, ନ◌ୀ, ମାଳୀ
ଶୂଳୀ, କାଳୀ, ଲଳୀ; ଜଳୀ ।"

ଚକ୍ରବାଳ [ଶୃଙ୍ଖଳାତୁଲ୍ୟ]:—

ଶୈଳା ଯଥା ଶବ୍ଦଭିଦ୍ ହତା ହତା
ହତାଶ୍ଚ ଭୂୟୋଽସ୍ୟନ୍ତୁ ପୁଂଖଗୈଃ ଖଗୈଃ
ଖଗୈଶ୍ଚ ସର୍ବେ ସ୍ୱଧିଷଣତାଃ ସ୍ଥିତା
ସ୍ଥିତାଧିରୂଢା ନହତାଃ ଫଳୈଃ ଫଳୈଃ ।

ସଂଦଷ୍ଟ ଯମକ:—

ପଶ୍ୟ ପଶ୍ୟ ରମଣସ୍ୟ ମେ ଗୁଣାନ୍
ଯେ◌ ଯେନ ବଶଗାଂ କରୋତିମାମ୍
ଯେନ ଯେନ ଦନମେତ ଦର୍ଶନଂ
ତେନ ତେନ ବଶଗାଂ କରୋତମାନ୍ ।

ଚତୁର୍ବ୍ୟବସିତ:—

ବାରଣାନାମୟ୍ୟ ମେବକାଲୋ
ବାରଣାନା ମୟ୍ୟମେବକାଳଃ
ବାରଣା ନା ମୟ୍ୟ ମେବ କାଲୋ
ବାରଣାନା ମୟ୍ୟ ମେବ କାଳଃ

ଉକ୍ତ ଅଧ୍ୟାୟରେ କାବ୍ୟର ଗୁଣଗୁଡ଼ିକ ନିମ୍ନଲିଖିତ କ୍ରମରେ ଆଲୋଚିତ ହୋଇଛି ।—ଶ୍ଲେଷ, ପ୍ରସାଦ, ସମତା, ସମାଧି, ମାଧୁର୍ଯ୍ୟ, ଓଜ, ସୌକୁମାର୍ଯ୍ୟ, ଅର୍ଥବ୍ୟକ୍ତି, ଉଦାରତା ଓ କାନ୍ତି । ଏଠାରେ ଗୋଟିଏ ବିଶିଷ୍ଟ କଥା ପାଠକମାନଙ୍କର ମନେ ପକାଇ ଦେବାକୁ ହେବ ଯେ, ସଂସ୍କୃତ ନାଟକରେ ବହୁସଂଖ୍ୟାରେ କ୍ଳିଷ୍ଟ ଶ୍ଳୋକ ଦେଖାଯାଏ । କେତେଗୋଟି ନାଟକରେ ଏତେ କ୍ଳିଷ୍ଟ ଶ୍ଳୋକ ଦେଖାଯାଏ ଯେ, ତାହା ପଢିଲେ ଅଧିକାଂଶ ପାଠକ ମନେ କରିବ, ଲେଖକଙ୍କୁ ମୋଟେ ସରଳ ଭାବରେ ଲେଖିବା ଆସୁ ନ ଥିଲା । ଭରତ କିନ୍ତୁ ନାଟ୍ୟକାରମାନଙ୍କୁ କଡ଼ା ଆଇନ ଜାରି କରି ବିରତ କରିବାକୁ ଚେଷ୍ଟା କରିଥିଲେ । ଷୋଡଶ ଅଧ୍ୟାୟର ଶେଷ ଶ୍ଳୋକରେ * ସେ କହିଛନ୍ତି—ଦର୍ଶକମାନଙ୍କୁ ନାଟକ ଉପଭୋଗ କରାଇବାକୁ ହେଲେ ମୃଦୁ ଓ ଲଳିତ ପଦ ବ୍ୟବହାର କରିବାକୁ ହେବ, ଗୂଢ଼ ଅର୍ଥ ନ ରଖି ସମସ୍ତେ ଅଭିନେତାଠାରୁ ଶୁଣୁ ଶୁଣୁ ଯେପରି ବୁଝିପାରିବେ, ସେ ପ୍ରତି ଦୃଷ୍ଟି ଦେବାକୁ ହେବ ।

## ନାଟ୍ୟ ଶାସ୍ତ୍ରରେ ନାୟକ ନାୟିକା

ଅଷ୍ଟାଦଶ ଅଧ୍ୟାୟରେ ନାଟକର ଦଶଭେଦ ନିମ୍ନଲିଖିତ କ୍ରମରେ ଅଲୋଚିତ ହୋଇଛି,—ନାଟକ, ପ୍ରକରଣ, ଅଙ୍କ, ବ୍ୟାୟୋଗ, ଭାଣ, ସମବକାର, ବୀଥି, ପ୍ରହସନ, ଡିମ ଓ ଈହାମୃଗ ।

---

*"ମୃଦୁଲଳିତ ପଦାଢ଼୍ୟଂ ଗୂଢ଼ଶବ୍ଦାର୍ଥଶୂନ୍ୟଂ
ଜନପଦସୁଖବୋଧ୍ୟଂ ଯୁକ୍ତିମନ୍ନୃତ୍ୟଯୋଜ୍ୟମ୍
ବହୁକୃତରସମାର୍ଗଂ ସନ୍ଧିସନ୍ଧାନ ଯୁକ୍ତଂ
ସ ଭବତି ଶୁଭକାବ୍ୟଂ ନାଟକ ପ୍ରେକ୍ଷକାଣାମ୍" ।

ବଂଶ ଅଧ୍ୟାୟରେ ଭାରତୀ [ ଶ୍ଳୋକ ୨୫ ] ସାତ୍ୱତୀ [ ଶ୍ଳୋକ ୩୮ ]
କୌଶିକୀ [ ଶ୍ଳୋକ ୪୭ ] ଓ ଆରଭଟୀ [ ଶ୍ଳୋକ ୫୬ ] ର
ବିସ୍ତୃତ ବର୍ଣ୍ଣନା ହୋଇଛି । ଚତୁର୍ବିଂଶ ଅଧ୍ୟାୟରେ ନାୟକ ନାୟିକା-
ମାନଙ୍କର ବର୍ଣ୍ଣନା କରାଯାଇଛି ।। ନାୟକମାନଙ୍କର ଧୀରୋଦ୍ଧତ,
ଧୀରଲଳିତ, ଧୀରୋଦାତ୍ତ, ଧୀର ପ୍ରଶାନ୍ତ ଭେଦରେ ଚାରିଗୋଟି
ବିଭାଗ କରାଯାଇଛି । ପୁଣି ନାୟିକା ମଧ୍ୟ ଚାରି ପ୍ରକାର—ଦେବୀ,
ନୃପପତ୍ନୀ, କୁଳ ସ୍ତ୍ରୀ, ଗଣିକା । ନାୟକମାନଙ୍କର ଲକ୍ଷଣ ଓ ନାୟିକା-
ମାନଙ୍କର ଗୁଣ ସୁନ୍ଦର ଭାବେ ବୁଝାଇ ଦିଆଯାଇଛି । ସ୍ତ୍ରୀମାନଙ୍କର
ନିମ୍ନଲିଖିତ ଭେଦ ସବୁ ଆଲୋଚିତ ହୋଇଛି—ମହାଦେବୀ, ଦେବୀ,
ସ୍ୱାମିନୀ, ସ୍ଥାୟିନୀ, ଭୋଗିନୀ, ଶିଳ୍ପକାରୀ, ନାଟକୀୟା, ନର୍ତ୍ତକୀ,
ଅନୁଚାରିକା, ପରିଚାରିକା, ସଂଚାରିଣୀ, ପ୍ରେଷଣ-କାରିକା, ମହତ୍ତରୀ,
କୁମାରୀ, ସ୍ଥବିରା ଓ ଆୟୁକ୍ତିକା ।

## ନାଟ୍ୟଶାସ୍ତ୍ରର ଲେଖକ କିଏ ?

ନାଟ୍ୟଶାସ୍ତ୍ର ବାସ୍ତବରେ କିଏ ଲେଖିଥିଲା, ଜାଣିବା ବଡ଼
କଷ୍ଟକର । ବାସ୍ତବରେ ଭରତ ଏ ଶ୍ଳୋକ ସବୁ ଲେଖିଥିଲେ ନା,
କେବଳ ନିଜର ଶିଷ୍ୟମାନଙ୍କୁ ଉପଦେଶ ଦେଇଥିଲେ ଏବଂ ପରେ
କୌଣସି ଶିଷ୍ୟ ଗୁରୁଙ୍କର ଉପଦେଶ ସବୁ ଶ୍ଳୋକାକାରରେ ଲିପି-
ବଦ୍ଧ କଲେ, ଜାଣିବାର ବର୍ତ୍ତମାନ ଆଉ କୌଣସି ଉପାୟ ନାହିଁ । ନାଟ୍ୟ-
ଶାସ୍ତ୍ରର ବହୁ ସ୍ଥଳରେ 'ଅନ୍ୟେ' ଓ 'ଅନ୍ୟେଷୁ' ଲେଖାଥିବାରୁ
ଜଣାଯାଏ, ଏ ଗ୍ରନ୍ଥ ଲେଖାଯିବା ବେଳେ ସୁଦ୍ଧା ଅନ୍ୟ ଅନେକ ଗ୍ରନ୍ଥ
ଥିଲା । ଏ ସବୁ ତୃତୀୟ ରାଜଶେଖରଙ୍କ ଉଲ୍ଲିଖିତ ଅନ୍ୟ ଅଧିକରଣ
ଗୁଡ଼ିକର ପ୍ରବର୍ତ୍ତକମାନଙ୍କ ଲକ୍ଷ୍ୟରେ ଲେଖା ଯାଇଥିଲା । ପୁଣି
ନାଟ୍ୟଶାସ୍ତ୍ରରେ ଲେଖାଅଛି, ତ୍ରୈଲୋକ୍ୟ ଜଗତରେ ନାଟ୍ୟ-

ଶାସ୍ତ୍ର ପ୍ରସ୍ତୁତି କରିବେ । ଅତଏବ ମଧ୍ୟ କୋହେଳ, ବତ୍ସ, ଶାଣ୍ଡିଲ୍ୟ
*ଓ ଧୂର୍ତ୍ତିଲ ନାଟ୍ୟଶାସ୍ତ୍ର-ବିଷୟକ ଗ୍ରନ୍ଥମାନ ଲେଖିଥିବା କଥା
ଭରତଙ୍କ ଗ୍ରନ୍ଥରୁ ଜଣାପଡ଼ୁଛି । [ ୩୭, ୨୪ ] ଅଷ୍ଟମ ଶତାବ୍ଦୀର
କୁଟ୍ଟନୀ ମତ ପ୍ରଣେତା ଦାମୋଦର ଗୁପ୍ତଙ୍କ ଲେଖାରୁ ଜଣାଯାଉଛି,
କୋହଳ ଜଣେ ନାଟ୍ୟଶାସ୍ତ୍ର-ଲେଖକ । ରାଜଶେଖରଙ୍କ ବାଳ-
ରାମାୟଣରେ ମଧ୍ୟ ଜଣେ କୋହଳନାମା ନାଟ୍ୟାଚାର୍ଯ୍ୟଙ୍କ କଥା
ଲେଖା ଅଛି । ହେମଚନ୍ଦ୍ର ସ୍ୱୀୟ କାବ୍ୟାନୁଶାସନରେ କୋଲାହଳ
ନାମକ ଜଣେ ନାଟ୍ୟାଚାର୍ଯ୍ୟଙ୍କ କଥା ଲେଖିଛନ୍ତି । ଶିଙ୍ଗଭୂପାଳ ସ୍ୱୀୟ
ରସାର୍ଣ୍ଣବ ସୁଧାକରର ପ୍ରଥମ ବିଳାସରେ ଭରତ, ଶାଣ୍ଡିଲ୍ୟ, କୋହଳ,
ଦତ୍ତିଲ,—ଏ ସମସ୍ତଙ୍କୁ ନାଟ୍ୟଶାସ୍ତ୍ରକାର ରୂପେ ଉଲ୍ଲେଖ କରି-
ଛନ୍ତି । କୋହେଳ, କୋଲାହଳ, କୋହଳ—ଏମାନେ ଜଣେ ବା
ପରସ୍ପରଠାରୁ ଭିନ୍ନ, ତାହା ମଧ୍ୟ ଜାଣି ହେଉ ନାହିଁ । ବର୍ତ୍ତମାନ
'ତାନ' ସମ୍ପର୍କରେ କୋହଳାଚାର୍ଯ୍ୟ ଲିଖିତ ଏକ ଗ୍ରନ୍ଥ ମଧ୍ୟ
ମିଳୁଛି । ଏ ସବୁ ଆଲୋଚନାରୁ କେବଳ ଏତିକି ମାତ୍ର ସୂଚିତ ହୁଏ,
ବହୁ ପ୍ରାଚୀନ କାଳରେ ସମ୍ଭବତଃ ଯେତେବେଳେ ସଭ୍ୟତାର
ଗ୍ରୀସୀୟମାନେ ମଧ୍ୟ ସଭ୍ୟତାର ବାଲ୍ୟାବସ୍ଥାରେ ଥିଲେ ସେତେ-
ବେଳେ ଭାରତରେ ଅଖଣ୍ଡ ଶାସ୍ତ୍ର ଚର୍ଚ୍ଚା ଥିଲା ।

## ନାଟ୍ୟଶାସ୍ତ୍ରର ରଚନାକାଳ

ବେଦ, ରାମାୟଣ, ମହାଭାରତ ପରି ଭରତ ନାଟ୍ୟଶାସ୍ତ୍ରର
ରଚନାକାଳ ଏପର୍ଯ୍ୟନ୍ତ ସ୍ଥିର ହୋଇ ପାରି ନାହିଁ । ବିଶ୍ୱବିଖ୍ୟାତ

---

*ଅସ୍ୟୋପଦେଶସମ୍ବନ୍ଧଂ ନାଟ୍ୟପ୍ରୋକ୍ତଂ ସ୍ୱୟଂଭୁବା
ଶେଷଂ ପ୍ରସ୍ତାର ତନ୍ତ୍ରେଣ କୋହଳଃ କଥୟିଷ୍ୟତି ।
(୩୭ ଅଧ୍ୟାୟ—୧୮ ଶ୍ଳୋକ)

ଅନୁସନ୍ଧେୟ। Maxmullerଙ୍କ ମତରେ ଖ୍ରୀଷ୍ଟପର ଷଷ୍ଠ ଶତାବ୍ଦୀରେ ଉକ୍ତ ଗ୍ରନ୍ଥ ଲେଖା ଯାଇଥିଲା । ପ୍ରସିଦ୍ଧ ପଣ୍ଡିତ ହର ପ୍ରସାଦ ଶାସ୍ତ୍ରୀ ଏହାର ରଚନାକାଳ ଖ୍ରୀଷ୍ଟ ପୂର୍ବ ୨ୟ ଶତାବ୍ଦୀ ବୋଲି ସ୍ଥିର କରିଛନ୍ତି । ଏ ବିଷୟର ଆଲୋଚନା କଷ୍ଟସାଧ୍ୟ ହେଲେ ମଧ୍ୟ ନିମ୍ନଲିଖିତ ଯୁକ୍ତି ସାହାଯ୍ୟରେ ତଥ୍ୟ ନିରୂପଣ ଲାଗି ବହୁଦୂର ଗତି କରି ହେବ । କେତେକ ପଣ୍ଡିତଙ୍କ ମତ ତଳେ ଦିଆଗଲା :—

[କ] ଅଷ୍ଟମ ଶତାବ୍ଦୀର କୁଟ୍ଟନୀ ମତ ଓ ଦଶମ ଶତାବ୍ଦୀର ଦଶରୂପକରେ ଲେଖାଅଛି ଯେ ବ୍ରହ୍ମାଙ୍କଠାରୁ ଭରତ ନାଟ୍ୟଶାସ୍ତ୍ର ଶିକ୍ଷା କରିଥିଲେ ।

[ଖ] ଭବଭୂତି ଭରତଙ୍କୁ ନାଟ୍ୟଶାସ୍ତ୍ର ପ୍ରଣେତା ଓ ବାଲ୍ମୀକିଙ୍କ ସମସାମୟିକ ରୂପେ ନିର୍ଦ୍ଦେଶ କରିଛନ୍ତି । ଏ ମଧ୍ୟ ଅଷ୍ଟମ ଶତାବ୍ଦୀର କଥା ।

ଗ] କାଳିଦାସ ବିକ୍ରମୋର୍ବଶୀୟରେ ଲେଖିଛନ୍ତି ଯେ ଭରତ ହେଉଛନ୍ତି ଦେବତାମାନଙ୍କର ନାଟ୍ୟଗୁରୁ । କାଳିଦାସଙ୍କ ସମୟ କାହାରି କାହାରି ମତରେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ଓ ଅନ୍ୟ କେତେକଙ୍କ ମତରେ ଖ୍ରୀଷ୍ଟପର ୫ମ ଶତାବ୍ଦୀ । ତେଣୁ ଭରତ କାଳିଦାସଙ୍କ ପୂର୍ବକାଳୀନ ।

(ଘ) ଭଟ୍ଟି—(୫୦୦-୬୫୦) ଦଣ୍ଡୀ, ଉଦ୍‌ଭଟ ପ୍ରଭୃତି ଅଳଂକାରିକମାନେ ଭରତଙ୍କ ଅଧିକ ସଂଖ୍ୟକ ଅଳଂକାର ଆଲୋଚନା କରିଛନ୍ତି । କିନ୍ତୁ ଭରତ କେବଳ ଚାରିଗୋଟି ଅଳଂକାରର ବର୍ଣ୍ଣନା କରିଥିବାରୁ ସ୍ପଷ୍ଟ ଅନୁମିତ ହୁଏ, ସେ ଏମାନଙ୍କ ବହୁଶତ ବର୍ଷ ପୂର୍ବେ ଥିଲେ ।

## ଏ ଯୁକ୍ତିର ସାର କଥା—

ଏ ସବୁ ଯୁକ୍ତି ଉପସ୍ଥାପନ କରି କେତେକଣ ପଣ୍ଡିତ ସ୍ଥିର କରିଛନ୍ତି ଯେ ଭରତ ସର୍ବଂଶ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଲୋକ [ କାଳିଦାସଙ୍କୁ ଏମାନେ ୫ମ ଶତାବ୍ଦୀର ଲୋକ ବୋଲି ସ୍ଥିର କରିଛନ୍ତି ]। ଅଗ୍ନିପୁରାଣ ସମ୍ପର୍କରେ ଏହା ପରେ ପରେ ଯେଉଁ ଆଲୋଚନା କରାଯିବ, ତହିଁରୁ ପାଠକେ ବୁଝିପାରିବେ, ଉକ୍ତ ପୁରାଣ ଷଷ୍ଠ ଶତାବ୍ଦୀର ଅବ୍ୟବହିତ ପୂର୍ବରୁ ଲିଖିତ ବୋଲି ଅନେକ ପଣ୍ଡିତଙ୍କ ମତ। ତେଣୁ ବର୍ତ୍ତମାନ ସ୍ଥିର ହେଲା ଯେ ଏହା ଅଗ୍ନି ପୁରାଣର ମଧ୍ୟ ଆଗରୁ ଲେଖା ଯାଇଥିଲା।

## ଯୁକ୍ତିଗୁଡିକର ପରୀକ୍ଷା—

କିନ୍ତୁ ବିଶ୍ଳେଷଣ ଓ ତର୍କର ସୀମା ଆଉ ଟିକିଏ ବିସ୍ତୃତ କଲେ ଦେଖାଯିବ, ଯେଉଁ କେତେକ ଆଧୁନିକ ପଣ୍ଡିତଙ୍କ ମତର ଅବତାରଣା କରାଗଲା, ତାହା ବସ୍ତୁତଃ ନିରର୍ଥକ। ପାଶ୍ଚାତ୍ୟ ଐତିହାସିକମାନଙ୍କ ପ୍ରଭାବରେ ସ୍ୱଭାବତା ସମ୍ପର୍କୀୟ ଯେ କୌଣସି ପ୍ରାଚୀନ ଭାରତୀୟ ବସ୍ତୁର ଅର୍ବାଚୀନତା ପ୍ରମାଣ କରିବା ଏକ ରୋଗରେ ପରିଣତ ହୋଇଯାଇଛି। ଭରତ ନାଟ୍ୟଶାସ୍ତ୍ର ଭାରତୀୟ ପରଂପରା ଅନୁସାରେ ଯେତେ ପ୍ରାଚୀନ, ତାକୁ ସେତେ ଆଧୁନିକ କରିବାର ପ୍ରୟାସ ପ୍ରଥମ ଦୁଇଗୋଟି ଯୁକ୍ତିରୁ ବେଶ୍ ସ୍ପଷ୍ଟ ହେଉଛି। ଅବଶ୍ୟ କାଳିଦାସଙ୍କ ସମୟ ନିରୂପିତ ହୋଇ ପାରିଲେ ଭରତଙ୍କ ସମୟ ନିରୂପଣରେ କେତେକ ଅସୁବିଧା ଦୂର ହୋଇ ପାରନ୍ତା। କିନ୍ତୁ ତାହା ଏ ପର୍ଯ୍ୟନ୍ତ ସ୍ଥିର ହୋଇ ନାହିଁ। ଯାହାହେଉ, K. G. Sankara ମହାଶୟ ଏବଂ K. C. Chattopadhyaya

ମଧ୍ୟ କାଳିଦାସଙ୍କ ସମୟ ଖ୍ରୀଷ୍ଟ ପୂର୍ବ ପ୍ରଥମ ଶତାବ୍ଦୀ ବୋଲି ଯାହା ସ୍ଥିର କରିଛନ୍ତି; ତାହା ସବୁଠାରୁ ବଳିଷ୍ଠ ମତବାଦ ସ୍ୱରୂପ ଗୃହୀତ ହୁଏ । ଏହା ଯେବେ ଠିକ୍ ହୁଏ, ଭରତଙ୍କୁ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ଆଣି ଥୋଇବା କେତେ ହାସ୍ୟାସ୍ପଦ, ସହଜରେ ବୁଝି ହେବ । ପୁଣି କାଳିଦାସଙ୍କ ଲେଖାରୁ ଏହା ଅକାଟ୍ୟ ଯୁକ୍ତିରେ ପ୍ରମାଣିତ ହେବ ଯେ ନାଟ୍ୟଶାସ୍ତ୍ର ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ମଧ୍ୟ ଅତି ପ୍ରାଚୀନ ବିବେଚିତ ହେଉଥିଲା । ନ ହେଲେ କି କାଳିଦାସଙ୍କ ପରି ଜଣେ ବିଚକ୍ଷଣ ପଣ୍ଡିତ କେବେ ଭରତଙ୍କୁ ଦେବତାମାନଙ୍କର ଗୁରୁ ବୋଲି କହିଥାନ୍ତେ । ସୁତରାଂ ଏବେ ଆମ ପକ୍ଷରେ ଭରତ ଯେପରି ଅତି ପ୍ରାଚୀନ, କାଳିଦାସଙ୍କ ସମୟରେ ମଧ୍ୟ ତାଠାରୁ ଅବଶ୍ୟ ପ୍ରାଚୀନତର ଗୁରୁତ୍ୱ ଦୃଷ୍ଟିରୁ କମ୍ ପ୍ରାଚୀନ ପରି ବିବେଚିତ ହେଉ ନ ଥିଲେ ।

## ଭରତ ଓ ବାତ୍ସ୍ୟାୟନ—

ଅଦ୍ଭୁତ ମଧ୍ୟ ଶ୍ରୁତ ପରଂପରା ଅନୁସାରେ ଭରତ ସର୍ବଥା କାମଶାସ୍ତ୍ର ପ୍ରଣେତା ବାତ୍ସ୍ୟାୟନଙ୍କ ପୂର୍ବବର୍ତ୍ତୀ । ଏହା ଅମୂଳକ ବା ଅସତ୍ୟ ବୋଲି ସହଜରେ ପ୍ରମାଣ କରି ହେବ ନାହିଁ । କେତେକ ପଣ୍ଡିତଙ୍କ ମତରେ ବାତ୍ସ୍ୟାୟନଙ୍କ କାଳ ପ୍ରାୟ ଖ୍ରୀଷ୍ଟପୂର୍ବ ସପ୍ତମ ବା ଅଷ୍ଟମ ଶତାବ୍ଦୀ ବାତ୍ସ୍ୟାୟନଙ୍କ ସାଂପ୍ରଯୋଗିକ ପ୍ରକରଣରେ ଗୁରୁ ସୁବର୍ଣ୍ଣନାଭ କଣ୍ଠସ୍ଥ ତାଙ୍କର ପୂର୍ବବର୍ତ୍ତୀ, ଯେହେତୁ ସେ ପ୍ରସ୍ତୁତ କରିଥିବା ତତ୍ତ୍ୱ ବାତ୍ସ୍ୟାୟନ ଲିପିବଦ୍ଧ କଲେ । କାବ୍ୟ ଗୁରୁ ରାଜଶେଖରଙ୍କ ବିବରଣୀ ଅନୁସାରେ ଯେବେ ଭରତଙ୍କ ସମସାମୟିକ, ତେବେ ତାଙ୍କର ସମୟ ଆନୁମାନିକ ତିନିହଜାର ବର୍ଷ ହେବା ଯୁକ୍ତି ସଙ୍ଗତ ।

## ନାଟ୍ୟଶାସ୍ତ୍ରର ଟୀକା—

୬

ନାଟ୍ୟଶାସ୍ତ୍ର ଉପରେ ବେଶୀ ଟୀକା ଲେଖା ଯାଇ ନ ଥିବା ପରି ଜଣାଯାଏ । କାଳିଦାସଙ୍କ ଶକୁନ୍ତଳା ଉପରେ ରାଘବଭଟ୍ଟ "ଅର୍ଥ-ଦ୍ୟୋତନିକା" ନାମକ ଯେଉଁ ଟୀକା ଲେଖିଛନ୍ତି, ତହିଁରୁ ସ୍ପଷ୍ଟ ଜଣାଯାଏ, ଅଭିନବଗୁପ୍ତ ନାଟ୍ୟଶାସ୍ତ୍ରର ଅଭିନବ ଭାରତୀ ନାମକ ଏକ ଟୀକା ଲେଖିଥିଲେ । ଅନ୍ୟ ଏକ ଗ୍ରନ୍ଥରୁ ଜଣାଯାଏ ଅଭିନବ ଗୁପ୍ତଙ୍କ ଟୀକାର ନାମ ହେଉଛି ନାଟ୍ୟବେଦବିବୃତ୍ତି । କେତେକ ପଣ୍ଡିତଙ୍କ ଗବେଷଣା ଫଳରେ ଏହା ଜଣା ଯାଉଛି, ମଙ୍ଗଳ ନାମକ ଜଣେ ପଣ୍ଡିତ ଅନ୍ୟ ଏକ ଟୀକା ଲେଖିଥିଲେ । ମାତୃଗୁପ୍ତାଚାର୍ଯ୍ୟ ଗୋଟିଏ ଟୀକା ଲେଖିଥିବା ପରି କେତେକ ଗ୍ରନ୍ଥର ସୂଚନାରୁ ଅନୁମିତ ହେଉଛି ।

---

## ୪ର୍ଥ ପରିଚ୍ଛେଦ

### ଅଗ୍ନିପୁରାଣ—

ପ୍ରାଚୀନ ଶ୍ରୁତି ପରଂପରା ଅନୁସାରେ ବ୍ୟାସଦେବ ଅଠରଖଣ୍ଡ ପୁରାଣର ଲେଖକ । ସୁତରାଂ ଅଗ୍ନିପୁରାଣ ମଧ୍ୟ ତାଙ୍କର ରଚନା । ଅଗ୍ନିପୁରାଣର ସମୟ କିନ୍ତୁ ଏପର୍ଯ୍ୟନ୍ତ ସ୍ଥିର କରିହୋଇ ପାରିନି । ଏ ପୁରାଣର ୩୩୬-୩୪୬—ଏ ଦଶ ଅଧ୍ୟାୟରେ ଅଳଂକାର ଶାସ୍ତ୍ରଗତ ପ୍ରାୟ ସମସ୍ତ ବିଷୟର ସ୍ଥୂଳ ସୂକ୍ଷ୍ମ ବିବରଣ ରହିଛି ।

୩୩୬—କାବ୍ୟ ଲକ୍ଷଣ, ଗଦ୍ୟ, ପଦ୍ୟ, ମିଶ୍ର ।
୩୩୭—ନାଟକର ପ୍ରସ୍ତାବନା, ପଞ୍ଚସନ୍ଧି ଓ ପଞ୍ଚଅର୍ଥ ପ୍ରକୃତି ।
୩୩୮—ରସ—ସ୍ଥାୟିଭାବ ଓ ବିଭାବାଦି—ନାୟକ ନାୟିକାଭେଦ ।
୩୩୯—ରୀତି ବୃତ୍ତି—ପାଞ୍ଚାଲୀତ୍ୟାଦି—ଶୁଦ୍ଧବୃତ୍ତି—ଭାରତୀତ୍ୟାଦି ।
୩୪୦—ନାଟକରେ ଅଙ୍ଗ ପ୍ରତ୍ୟଙ୍ଗର ଗୁମ୍ଫନ ।
୩୪୧—ଅଭିନୟ—ସାତ୍ତ୍ୱିକ, ବାଚିକ, ଅଙ୍ଗିକ, ଆହାର୍ଯ୍ୟ ।
୩୪୨—ଶବ୍ଦାଳଂକାର, ଅନୁପ୍ରାସ, ଯମକ, ଚିତ୍ର, ଇତ୍ୟାଦି ।
୩୪୩—ଅର୍ଥାଳଙ୍କାର—ଉପମା, ରୂପକ, ସହୋକ୍ତି ।
୩୪୪—ଅଳଂକାର ବିଷୟକ କେତେ କଥା ।
୩୪୫—କାବ୍ୟରେ ଗୁଣ ନିରୂପଣ ।
୩୪୬—କାବ୍ୟରେ ଦୋଷ ନିରୂପଣ ।

ଏ ଦଶଗୋଟି ଅଧ୍ୟାୟର ମୋଟ ଶ୍ଳୋକସଂଖ୍ୟା ୩୬୨ ।

## ଅଗ୍ନିପୁରାଣର ପ୍ରାଚୀନତା—

ଅନେକ କହନ୍ତି ଅଗ୍ନିପୁରାଣ ଅଳଂକାର ଉପରେ ପ୍ରାଚୀନତମ ଗ୍ରନ୍ଥ । ଏହା ପ୍ରାଚୀନତମ ଗ୍ରନ୍ଥ ହୋଇ ପାରେ କି ନା ତାହା ବଡ଼ ଗମ୍ଭୀର ବିଷୟ । ତଥାପି ଅଗ୍ନିପୁରାଣ ପ୍ରାଚୀନତମ ଗ୍ରନ୍ଥ ନୁହେ ଏବଂ ଯଥାସମ୍ଭବ ଭରତ, ଦଣ୍ଡୀ ଓ ଭାମହଙ୍କ ପରବର୍ତ୍ତୀ ବୋଲି ଅନେକଙ୍କର ସିଦ୍ଧାନ୍ତ । ସେମାନଙ୍କ ସିଦ୍ଧାନ୍ତର ସାର ଓ ଯୁକ୍ତିପରଂପରା ତଳେ ଦିଆଯାଉଛି:—

(କ) ଏଥିରେ ରାମାୟଣ, ହରିବଂଶ, ଧନ୍ୱନ୍ତରି, ଓ ସୁଶ୍ରୁତ ପ୍ରଭୃତିଙ୍କ ଉଲ୍ଲେଖ ଅଛି । ତେଣୁ ସର୍ବଥା ଏମାନଙ୍କ ପରବର୍ତ୍ତୀ ।

(ଖ) ପ୍ରସିଦ୍ଧ ଅମର କୋଷର ୧୫୦୦ ଶ୍ଳୋକରୁ ପ୍ରାୟ ୧୨୦୦ ଶ୍ଳୋକର ଅଗ୍ନିପୁରାଣ ଗତ ୧୨୦୦ ଶ୍ଳୋକ ସଙ୍ଗେ ସାମ୍ୟ ଅଛି । ଅମର କୋଷର କାଳ କିନ୍ତୁ ନିଷ୍ଟିତ ରୂପେ ଏପର୍ଯ୍ୟନ୍ତ ଜଣା-ଯାଇ ନାହିଁ । ଅନ୍ତର ବା ବାହ୍ୟ ପ୍ରମାଣ ଦ୍ୱାରା ଏହାର ସମୟ ନିରୂପିତ ହେଲେ ହୁଏତ, କିଏ ଆଗ, କିଏ ପଛ ଏ ବିବାଦ ସହଜରେ ତୁଟି ଯିବ । ଅଗ୍ନିପୁରାଣରେ ସଂସ୍କୃତ ସାହିତ୍ୟର ବହୁତ କଥା ଲେଖା ଅଛି । ପୁଣି ଅଧ୍ୟାତ୍ମ ଶ୍ରେଣୀ ଭାବରେ ୩୮୦ ଅଧ୍ୟାୟରେ ଭଗବତ୍ ଗୀତାର ମଧ୍ୟ ଏକ ସଂକ୍ଷିପ୍ତ ସାର ରହିଛି । ତେବେ ଭଣ କୁହାଯିବ, ଏହା ଭଗବତ୍ ଗୀତାର ମଧ୍ୟ ମୂଳ ? ଠିକ୍ ସେହିପରି ଅମର କୋଷର ବହୁ ଶ୍ଳୋକ ଅଗ୍ନିପୁରାଣ ଉଦ୍ଧାର କରିଛି ସିନା ଅଗ୍ନିପୁରାଣରୁ ଅମର କୋଷ ନେଇ ନାହିଁ । ଅମର କୋଷ ରଚନାର କାଳ ପଣ୍ଡିତମାନେ ଏରୂପେ ସ୍ଥିର କରିଛନ୍ତି:—

୧ । Macdonell (ମେକ୍ ଡୋନାଲ) ଖ୍ରୀଷ୍ଟପର ୫୦୦ ବର୍ଷ ।

୨ । Dr. Hoernel (ହର୍ ନେଲ୍) ୬୨୫-୯୪୦ ମଧ୍ୟରେ ।

୩ । Mr. Oak (ଓକ୍) ଖ୍ରୀଷ୍ଟର ୪ର୍ଥ ଶତାବ୍ଦୀ ।

୪ । Maxmuller (ମୋକ୍ଷମୂଲର) ଅମର କୋଷ ଷଷ୍ଠ ଶତାବ୍ଦୀରେ ଚୀନ ଭାଷାରେ ଅନୂଦିତ ହୋଇଥିବାରୁ ସର୍ବଥା ଷଷ୍ଠ ଶତାବ୍ଦୀର ପୂର୍ବବର୍ତ୍ତୀ ।

ଯଦ୍ୟପି ଅମର କୋଷର ସମୟ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ, ତଥାପି ଅଗ୍ନିପୁରାଣର ସମୟ ଚତୁର୍ଥ ବା ପଞ୍ଚମ ( ପ୍ରସିଦ୍ଧି ଲାଭ କରିବାକୁ ଅନ୍ତତଃ ଶହେ ବର୍ଷ ଲାଗିଥିବ ) ଶତାବ୍ଦୀ ପୂର୍ବେ ରଚିତ ହୋଇ ନ ଥିବ ।

(ଗ) ଭରତ ନାଟ୍ୟ ଶାସ୍ତ୍ରରେ, "ପୁରାଣେସଂପ୍ରକୀର୍ତ୍ତିତାଃ" ବୋଲି ଲେଖା ଥିବାରୁ ଜଣାଯାଏ, ସେତେବେଳେ ମତ୍ସ୍ୟ ପୁରାଣ ଥିଲା । କିନ୍ତୁ ତହିଁରେ ଅଗ୍ନିପୁରାଣର ନାମୋଲ୍ଲେଖ ନାହିଁ । ମାତ୍ର ଅଗ୍ନିପୁରାଣରେ ଲେଖାଅଛି, ଅମୁକ ବୃତ୍ତିର ନାମ ଭାରତୀ-ବୃତ୍ତି ଯେହେତୁ ତାହା ଭରତଙ୍କ ଦ୍ୱାରା ଉଦ୍ଭୂତ । ଏଥିରୁ ଜଣାଯାଏ, ଅଗ୍ନିପୁରାଣ ଆଗରୁ ଭରତ ନାଟ୍ୟ ଶାସ୍ତ୍ର ଲେଖା ସରିଥିଲା ।

(ଘ) ଭାମହ ଷଷ୍ଠ ବା ସପ୍ତମ ଶତାବ୍ଦୀର ଲେଖକ । ସେ ଲେଖିଛନ୍ତି * ଯେ "ମୁଁ ନିଜଗ୍ରନ୍ଥରେ ସ୍ୱକୃତ ଉଦାହରଣ ଓ ଲକ୍ଷଣ

---

* ସ୍ୱୟଂ କୃତୈରେବ ନିଦର୍ଶନୈରୟଂ
ମୟା ପ୍ରକ୍ଲୃପ୍ତା ଖଳୁ ବାଗଳଂକୃତିଃ ।"

ସବୁ ଲେଖିଛନ୍ତି । ବିଚାର କଲେ ଜଣାଯିବ—ରୂପକ, ଆକ୍ଷେପ, ପର୍ଯ୍ୟାୟୋକ୍ତି ଓ ସମାସୋକ୍ତି ପ୍ରଭୃତିର ଲକ୍ଷଣ ଅଗ୍ନିପୁରାଣରେ ଯେପରି ଭାମହଙ୍କର ପ୍ରାୟ ସେହିପରି । ତେଣୁ ଅଗ୍ନିପୁରାଣ ଭାମହଙ୍କଠାରୁ ଅନୁକରଣ କରିଥିବା ସମ୍ଭବ ।

(ଙ) ବଡ଼ ଆଶ୍ଚର୍ଯ୍ୟର କଥା, କୌଣସି ପ୍ରାଚୀନ ଲେଖକ ଅଗ୍ନିପୁରାଣରୁ କିଛି ଉଦ୍ଧାର କରି ନାହାନ୍ତି । ମମ୍ମଟ ବିଷ୍ଣୁ ପୁରାଣର ଉଲ୍ଲେଖ କରିଛନ୍ତି, କିନ୍ତୁ ଅଗ୍ନି ପୁରାଣର କରି ନାହାନ୍ତି । ପଞ୍ଚଦଶ ଶତାବ୍ଦୀର ବିଖ୍ୟାତ ଉତ୍କଳୀୟ ବିଶ୍ୱନାଥ ସାହିତ୍ୟ ଦର୍ପଣରେ ବୋଧହୁଏ ପ୍ରଥମ ଥର ପାଇଁ ଅଗ୍ନିପୁରାଣର ନାମୋଲ୍ଲେଖ କରିଛନ୍ତି ।

ତେଣୁ ଶେଷରେ ଉପର୍ଯ୍ୟୁକ୍ତ ପ୍ରମାଣ ଭିତ୍ତି ଉପରେ ଦଣ୍ଡାୟମାନ ହୋଇ ଏହା କୁହା ଯାଇଛି ଯେ ଅଳଂକାର ଶାସ୍ତ୍ରର ୧ମ ଗ୍ରନ୍ଥରୂପେ ଅଗ୍ନି ପୁରାଣ ଗୃହୀତ ହୋଇ ପାରିବ ନାହିଁ ।

ଏ ଯୁକ୍ତିମାନଙ୍କର ପରୀକ୍ଷା—ଉଲ୍ଲିଖିତ ଯୁକ୍ତି ଗୁଡ଼ିକର ଯଥାର୍ଥ୍ୟ ପରୀକ୍ଷା କରିବାବେଳେ ଅବଶ୍ୟ ଅନେକ ସନ୍ଦେହର ସମ୍ମୁଖୀନ ହେବାକୁ ପଡ଼େ । ତଥାପି ସତ୍ୟତା ନିରୂପଣ କରିବା ଚେଷ୍ଟା ସର୍ବଥା ଶଂସନୀୟ । ଉପର୍ଯ୍ୟୁକ୍ତ କ୍ରମରେ ବର୍ତ୍ତମାନ ଯୁକ୍ତି ଗୁଡ଼ିକର ପରୀକ୍ଷା କରାଯାଉ ।

## ଅଗ୍ନି ପୁରାଣ କେଉଁ ଅର୍ଥରେ ପ୍ରାଚୀନ :—

[କ] ରାମାୟଣ, ହରିବଂଶ, ସୁଶ୍ରୁତ ଓ ଧନ୍ୱନ୍ତରିଙ୍କର ସମୟ ଏ ପର୍ଯ୍ୟନ୍ତ ନିରୂପିତ ହୋଇନାହିଁ ! ଗୋଟିଏ କଥା ଏହି ଯେ ଭାର-

ଗୀପ୍ସ ଶ୍ରୁତ ପରଂପର୍ ଠାରୁ ଅଧୂନିକ ସମାଲୋଚନାରେ ସିଦ୍ଧାନ୍ତ ସମ୍ପୂର୍ଣ୍ଣ ଭିନ୍ନ । ଧନ୍ୱନ୍ତରି ତୃଏବ ନବରତ୍ନ ମଧ୍ୟରୁ ଅନ୍ୟତମ ନ ହୋଇ ପାରନ୍ତି ପୁଣି ଅଗ୍ନିପୁରାଣକୁ ପ୍ରଥମ ଗ୍ରନ୍ଥ କହିବା ମଧ୍ୟ ଠିକ୍ ହେବ ନାହିଁ ଯେତେଦିନ ପର୍ଯ୍ୟନ୍ତ ସଂସ୍କୃତଶାସ୍ତ୍ରଙ୍କ ଗୁରୁ ତାଲିକାର ମିଥ୍ୟାତ୍ୱ ପ୍ରମାଣିତ ନ ହୋଇଛି । କିମ୍ବଦନ୍ତୀ ଅନୁସାରେ ଯେବେ ଭରତ ଏହି ଜଗତରେ ରୂପକ ଶାସ୍ତ୍ରର ପ୍ରଥମ ଗ୍ରନ୍ଥକାର ତେବେ ସେ ସତ୍ୟ ଯୁଗର କମ୍ବା ଅତି ପ୍ରାଚୀନ କାଳର ହେବା ସଙ୍ଗତ । ଏପରି ସ୍ଥଳେ କଳିଯୁଗର ପ୍ରାକକାଳରେ ଲିଖିତ ବ୍ୟାସଙ୍କ ପୁରାଣ [ ଯେବେ ପାରଂପରିକ ମତ ଗ୍ରହଣ କରାଯାଏ ] କପରି ପ୍ରଥମ ଗ୍ରନ୍ଥ ହୋଇ ପାରିବ ? ରାମାୟଣ, ହରିବଂଶ ତ ସର୍ବଥା ଅଗ୍ନିପୁରାଣର ପୂର୍ବବର୍ତ୍ତୀ ହେବା ସମ୍ଭବ । ଧନ୍ୱନ୍ତରି ଓ ସୁଶ୍ରୁତଙ୍କ ସମୟ ନିର୍ଦ୍ଧାରିତ ହେଲେ ଅବା ଏ ଦିଗରେ ଅଧିକ ମାର୍ଗ ଅଗ୍ରସର ହୋଇ ପାରନ୍ତା । ତଥାପି ଭାରତୀୟ ପ୍ରାଚୀନ ଇତିହାସରେ ବଡ଼ ବଡ଼ ଐତିହାସିକମାନଙ୍କର ଯେଉଁ ସମୟ ଗତ ମତଭେଦ ଦେଖାଯାଏ, ତାହା ବିଚାର କଲେ ଏ ସମସ୍ୟାର ସଠିକ ସମାଧାନ ବଡ଼ ଦୁରୂହ ପ୍ରତୀତ ହେବ । ଯେଉଁମାନେ ଅଗ୍ନିପୁରାଣକୁ ପ୍ରାଚୀନତମ ଗ୍ରନ୍ଥ କହନ୍ତି, ସେମାନେ ନାଟ୍ୟଶାସ୍ତ୍ରରେ ନାଟ୍ୟଶାସ୍ତ୍ରର ପ୍ରାଧାନ୍ୟ ଦେଖି ବହୁ ବିସ୍ତୃତ ବର୍ଣ୍ଣିତ ଅଳଂକାରର ମୂଳଗ୍ରନ୍ଥ ବୋଲି ତାକୁ ଅସ୍ୱୀକାର କରନ୍ତି । ଏହା ଯେବେ ଠିକ୍ ବୋଲି ଗୋଟିଏ ଦିଗରୁ ଧରାହୁଏ, ତେବେ ଅଗ୍ନିପୁରାଣ ଯେ ପ୍ରାଚୀନତମ ଗ୍ରନ୍ଥ ଏଥିରେ ସନ୍ଦେହ ନାହିଁ । କିନ୍ତୁ ତା ନ ହେଲେ ନାଟ୍ୟଶାସ୍ତ୍ର ହେଉଛି ସର୍ବପ୍ରଥମ ଗ୍ରନ୍ଥ । ବର୍ତ୍ତମାନ ଅନ୍ୟ ଯୁକ୍ତ ଗୁଡ଼ିକର ପରୀକ୍ଷା କଲେ ଅଗ୍ନି ପୁରାଣକୁ ଖ୍ରୀଷ୍ଟପର ଷଷ୍ଠ-ଶତାବ୍ଦୀ ପର୍ଯ୍ୟନ୍ତ ଅଣାଯାଇ ପାରିବ କି ନା ତାହା ଜଣାଯିବ ।

[ଖ] ଅମର କୋଷ ଓ ଗୀତା—କିଂବଦନ୍ତୀ ଅନୁସାରେ ଏବଂ ସଂସ୍କୃତ ସାହିତ୍ୟର ପାରଂପରିକତା ଅନୁଯାୟୀ ସେହି ବ୍ୟାସଦେବ, ଗୀତା-ସମ୍ବଳିତ ଓ ହରିବଂଶଯୁକ୍ତ ମହାଭାରତ ଏବଂ ଅଗ୍ନିପୁରାଣର ଲେଖକ। ଅଗ୍ନିପୁରାଣ ଯେଉଁ ଶତାବ୍ଦୀରେ ଲେଖାଗଲେ ମଧ୍ୟ ତାର 'କର୍ତ୍ତା' ନିରୂପଣ କରିବା ବୈଜ୍ଞାନିକ-ସମାଲୋଚକମାନଙ୍କ ପକ୍ଷେ କେବଳ କଷ୍ଟକର ନୁହେଁ, ସର୍ବଥା ଅସାଧ୍ୟ ଓ ଅସମ୍ଭବ। ତେଣୁ ସେମାନେ କହନ୍ତି, ଅନ୍ୟଜଣେ ଏ ଗ୍ରନ୍ଥ ଲେଖିଦେଇ ପ୍ରସିଦ୍ଧ ବ୍ୟାସଦେବଙ୍କ ନାଁରେ ତାହା ପ୍ରକାଶ କରିଥିବ ଯେହେତୁ ଖ୍ୟାତ ଲେଖକଙ୍କ ନାମରେ କୌଣସି ଗ୍ରନ୍ଥ ପ୍ରକାଶ ପାଇଲେ ଲୋକେ ତାହା ଆଗ୍ରହରେ ପଢ଼ନ୍ତି। ଏହା ସ୍ଥଳ-ବିଶେଷରେ ସତ୍ୟ ହୋଇପାରେ। ତଥାପି ଏ କ୍ଷେତ୍ରରେ ଏ ଯୁକ୍ତି କେତେଦୂର ଗ୍ରହଣୀୟ ଦେଖିବାର କଥା। ଏ ଯୁକ୍ତିର ଖଣ୍ଡନ ଲାଗି ଏହା ନିଃସନ୍ଦେହରେ କୁହାଯାଇ ପାରେ ଯେ ନାମ ଲାଳସା, ଜ୍ଞାନପ୍ରସାର ଲାଳସାଠାରୁ ଲେଖକ ପକ୍ଷରେ ବଡ଼। ଏପରି ସ୍ଥଳେ ବରଂ ବ୍ୟାସଙ୍କର କୌଣସି ଅପ୍ରକାଶିତ ଗ୍ରନ୍ଥ ହୁଏତ କେହି ଜଣେ ଲେଖକ ନିଜର ବୋଲି ଘୋଷଣା କରିପାରେ। କିନ୍ତୁ ନିଜର ବହୁ କଷ୍ଟ ପ୍ରସୂତ ଗ୍ରନ୍ଥ ଅନ୍ୟ ନାମରେ ପ୍ରକାଶ କରିବା ନିରଭିମାନ ଓ ଏକାନ୍ତ ପରହିତୈକବ୍ରତ, ଅସାଧାରଣ ସତ୍ତ୍ୱଗୁଣୀ ଲୋକ ଛଡ଼ା ଅନ୍ୟର କେବେ ସମ୍ଭବ ନୁହେଁ। ସେ ଯାହା ହେଉ, ଅଗ୍ନିପୁରାଣରେ ଗୀତାର ସାର ଅଛି, ଏଥିରେ ମତଭେଦ ନାହିଁ। ଅବଶ୍ୟ ଏହା କଦାପି କୁହାଯାଇ ପାରିବ ନାହିଁ ଯେ ଅଗ୍ନିପୁରାଣର ବାକ୍ୟସବୁ ଉଦ୍ଧାର କରାଯାଇ ଗୀତା ଲେଖା ଯାଇଥିଲା। ହୁଏତ ଗୀତାର ସାର ଦେବାକୁ ଯାଇ ଅଗ୍ନିପୁରାଣରେ ବ୍ୟାସଦେବ ତହିଁରୁ କେତେକ ଅଂଶ ଅବିକଳ ଉଦ୍ଧାର କରି-ଥିଲେ। ଅଥବା ଏହା ମଧ୍ୟ କୁହାଯାଇ ପାରିବ ଯେ ଗୀତାରେ

ଯେଉଁସବୁ ଶ୍ଳୋକ ଦେଖାଯାଏ, ସେ ସବୁର ଅଧିକାଂଶ ଖଣ୍ଡବାକ୍ୟ ଆକାରରେ ଉପନିଷଦରେ ଦେଖିବାକୁ ମିଳିବ । ତେବେ କଣ ଏଥିରୁ ଜଣାଯିବ ଯେ ବେଦର ଶେଷ ଅଂଶ ଉପନିଷଦ ମଧ୍ୟ ବ୍ୟାସପ୍ରୋକ୍ତ ଗୀତାରୁ ଉଦ୍ଧୃତ ହୋଇଛି । ତେଣୁ ଏ ଯୁକ୍ତି ସର୍ବଥା ତ୍ୟାଜ୍ୟ । ତାପରେ ଏ ଯୁକ୍ତିରେ ଆଂଶିକ ବିଶ୍ୱାସ କରାଗଲେ ମଧ୍ୟ ତାହାର ଶେଷର ଅମର କୋଷ ପର୍ଯ୍ୟନ୍ତ ପ୍ରସାରିତ କରାଯାଇ ପାରିବ ନାହିଁ । ଅଗ୍ନିପୁରାଣର ତତ୍ତ୍ୱ ବିଷୟକ ବିବରଣ ଓ ଅମରକୋଷର ନାମ—ଗ୍ରନ୍ଥନ ମୂଳକ ରଚନା—ଏ ଦୁଇଟି ସ୍ୱତନ୍ତ୍ର ବସ୍ତୁ । ଅଗ୍ନି-ପୁରାଣରେ କୋଷ ସଂପର୍କରେ ପାଶ୍ଚାତ୍ୟ ଅନୁସନ୍ଧିତ୍ସୁମାନେ ଯେଉଁ ସବୁ ଅନୁମାନ କରୁଛନ୍ତି, ଅମରକୋଷ ପାଇଁ ସେ ଗୁଡିକ ପ୍ରଯୁଜ୍ୟ ନୁହେଁ । ପ୍ରାମାଣିକ ଗ୍ରନ୍ଥରୁ ଅନ୍ୟମାନେ ଅନୁକରଣ ବା ଅନୁ-ସରଣ ଦ୍ୱାରା ପ୍ରେରଣା ପାଇବା ସାଧାରଣ କଥା । ଏପରି ସ୍ଥଳେ ଅହିନ୍ଦୁ ଅମର ସିଂହଙ୍କର ଅଂଶ ଉଦ୍ଧାର କରି ଯେଉଁ ଅଗ୍ନିପୁରାଣ ଲେଖାଗଲା, ତାହା ପରଂପରାରେ ଧର୍ମାଭିମାନୀ ହିନ୍ଦୁ ପଣ୍ଡିତଗଣ ନିର୍ବାଦରେ କିପରି ପ୍ରଧାନ ଗ୍ରନ୍ଥରୂପେ ମାନିଗଲେ ଏବଂ ତତ୍-କାଳରେ ଯଥାସମ୍ଭବ ବିଶେଷ ପ୍ରସିଦ୍ଧି ପାଇ ନ ଥିବା ଅମରକୋ-କୋଷରୁ 'ପୁରାଣ' ଗ୍ରନ୍ଥକାର କିପରି ଅଂଶମାନ ଉଦ୍ଧାର କରିନେଲେ ? ଯେବେ କୁହାଯାଏ—ଅବଶ୍ୟ ଏହା ଅନେକେ କହନ୍ତି—ଅଗ୍ନିପୁରାଣ ସଂସ୍କୃତ ସାହିତ୍ୟର ଏକ ବିବରଣୀ ଦେବାକୁ ଏହା ଲିପିବଦ୍ଧ କରିଥିଲେ ଏବଂ ଅଗ୍ନିପୁରାଣରେ ଏପରି ନାନା ବିଷୟରେ ବିବରଣୀମାନ ସଂଗୃହୀତ ହୋଇ ଉପସ୍ଥାପିତ ହୋଇଛି, ତେବେ କଣ ଗୀତା ଓ ଅମରକୋଷ—ଏ ଦୁଇଟିରୁ ଛଡ଼ା ଅଂଶ ଉଦ୍ଧାର ପୂର୍ବକ ବିବୃତ କରିବା ପାଇଁ ଅନ୍ୟ ଗ୍ରନ୍ଥ ନ ଥିଲା । ତେଣୁ ଏ ଯୁକ୍ତି ଅମୂଳକ ।

## ଅମରକୋଷର ପରବର୍ତ୍ତିତା :—

ଏହା ଛଡ଼ା ସମାଲୋଚକମାନଙ୍କର ଯୁକ୍ତି ଅନ୍ୟ ଦିଗରୁ ଆଲୋଚନା କଲେ ଜଣାଯିବ ଯେ ପ୍ରସିଦ୍ଧ ଅଗ୍ନିପୁରାଣର ବହୁ ଅଂଶ ମଧ୍ୟରୁ ଅମର ସିଂହ ବୌଦ୍ଧ ହୋଇଥିବା ଫଳରେ ଅନ୍ୟାନ୍ୟ ହିନ୍ଦୁ-ଧର୍ମ ସମ୍ପର୍କୀୟ ଅଂଶ ବା ଅଧ୍ୟାୟ ଉପରେ ଗୁରୁତ୍ୱ ନ ଦେଇ ସଂସ୍କୃତ-ପାଠୀ ଓ ସଂସ୍କୃତ ପ୍ରିୟ ଲୋକମାନଙ୍କର ପ୍ରବେଶ ମାର୍ଗ ସ୍ୱରୂପ, ଧର୍ମାଧର୍ମ ତତ୍ତ୍ୱ ଆଲୋଚନା ବର୍ଜିତ [ ଅମରକୋଷ ବା ଅଭିଧାନ ] ପ୍ରଧାନ ଅଂଶ ଉଠାଇ ନେଲେ । ଅଗ୍ନିପୁରାଣ ଗର୍ଭରେ ଥିବାବେଳେ ସର୍ବସାଧାରଣ ତାହା ଜାଣୁ ନ ଥିଲେ ବା ଗ୍ରନ୍ଥର ବିଶାଳତା ହେତୁ ସମସ୍ତେ ତହିଁରେ ପ୍ରବେଶ କରିବାକୁ ଚେଷ୍ଟା କରୁ ନ ଥିଲେ । ତେଣୁ ଧର୍ମପ୍ରିୟ ଅମରସିଂହ ବୌଦ୍ଧମାନଙ୍କର ସଂସ୍କୃତ ଶିକ୍ଷା ସୁଗମ କରିବାଲାଗି "ନାମଲିଙ୍ଗାନୁଶାସନ" ଲେଖିଲେ । ତେଣୁ ଅମର କୋଷର ମୂଳରେ ଗ୍ରନ୍ଥକାର ସ୍ୱୟଂ ଲେଖିଛନ୍ତି :—

"ସମାହୃତ୍ୟାନ୍ୟତନ୍ତ୍ରାଣି ସଂକ୍ଷିପ୍ତୈଃ ପ୍ରତିସଂସ୍କୃତୈଃ
ସଂପୂର୍ଣ୍ଣମୁଚ୍ୟତେ ବର୍ଗୈ ର୍ନାମଲିଙ୍ଗାନୁଶାସନମ୍

ଅର୍ଥାତ୍ ଅନ୍ୟ ତନ୍ତ୍ରମାନଙ୍କୁ ସଂଗ୍ରହ କରି ଏ ଗ୍ରନ୍ଥ ସେ ଲେଖିଛନ୍ତି । କିଏ କହିପାରେ, ଅଗ୍ନିପୁରାଣର ଏତେ ଅଂଶ ଅବିକଳ ଉଦ୍ଧାର କରିଥିବାରୁ ସର୍ବପ୍ରଥମେ ସେ ସ୍ୱୀୟ ଗ୍ରନ୍ଥର ଅନ୍ୟୋପାଦାନମୂଳକତା ସ୍ୱୀକାର କରିଛନ୍ତି । ଅତଏବ ଅମରକୋଷର ସମୟ ଦ୍ୱାରା କେତେକ ଯାହା କହନ୍ତି, ଅଗ୍ନିପୁରାଣ ଖ୍ରୀଷ୍ଟୀୟ ଷଷ୍ଠ ବା ସପ୍ତମ ଶତାବ୍ଦୀର ଲେଖା, ତାହା ଆଦୌ ଠିକ୍ ନୁହେ ।

[ଗ] ଭରତ ନାଟ୍ୟଶାସ୍ତ୍ରପରେ ଯେ ଅଗ୍ନିପୁରାଣ ଲେଖା ଯାଇଛି, ଏଥିରେ ସନ୍ଦେହ ନାହିଁ । ତେଣୁ ଏ ବିଷୟରେ ଅଧିକ ଆଲୋଚନା ଦରକାର ନାହିଁ । ପୁଣି ଏହା କହିବା ଅପ୍ରାସଙ୍ଗିକ ନୁହେଁ ଯେ, ଯେଉଁମାନେ ଅଗ୍ନିପୁରାଣକୁ ପ୍ରଥମ ଗ୍ରନ୍ଥ କହନ୍ତି, ସେମାନେ ଭରତ ନାଟ୍ୟଶାସ୍ତ୍ରର ପ୍ରାଚୀନତା ବା ଅଧମତା ଯେ ଅସ୍ୱୀକାର କରନ୍ତି ତାହା ନୁହେଁ, କିନ୍ତୁ ଉହିଁରେ ନାଟ୍ୟପ୍ରାଧାନ୍ୟ ଦେଖି ଅଗ୍ନିପୁରାଣକୁ ପ୍ରଥମ ଅଳଙ୍କାର ଗ୍ରନ୍ଥ କହନ୍ତି ।

[ଘ] ଭାମହଙ୍କ କାବ୍ୟରୁ ଜଣାଯାଏ, ସେ ସ୍ୱକୃତ ଉଦାହରଣ ଦେଇଛନ୍ତି ଅର୍ଥାତ୍ ଉଦାହରଣ ଦେବାବେଳେ ସେ ଅନ୍ୟର ଶ୍ଳୋକ ଉଦ୍ଧାର କରି ନାହାନ୍ତି । ସାହିତ୍ୟ ଦର୍ପଣକାର ବହୁ ସ୍ଥଳରେ ଅନ୍ୟ ଲେଖକମାନଙ୍କର ଶ୍ଳୋକ ଉଦ୍ଧାର କରିଛନ୍ତି ଏବଂ କେତେକ ସ୍ଥଳରେ ନିଜର ମଧ୍ୟ ରଚିତ ଶ୍ଳୋକ ଉଦ୍ଧାର କରିଛନ୍ତି । ଭାମହଙ୍କ ଏ ସ୍ୱାତନ୍ତ୍ର୍ୟ କେବଳ ଉଦାହରଣର ବେଷ୍ଟନୀ ମଧ୍ୟରେ ସୀମାବଦ୍ଧ । ସୂତ୍ରରଚନା ଏ ସ୍ୱାତନ୍ତ୍ର୍ୟର ବାହାରେ । ତେଣୁ ଅମୁକ ଅମୁକ ଅଳଂ-କାରର ଲକ୍ଷଣ, ଏ ସ୍ୱାଧୀନ ଲେଖକ ଭାମହଙ୍କଠାରୁ ଅଗ୍ନିପୁରାଣ ଅନୁକରଣ କରିଛି କହିବା ସତ୍ୟର ଅପଲାପ । ଯେବେ ମଧ୍ୟ କୃତ୍ର ସ୍ଥଳରେ ଏହା ସ୍ୱୀକାର କରାଯାଏ, ତଥାପି ଅଗ୍ନିପୁରାଣର ଲକ୍ଷଣ ସଙ୍ଗେ ଭାମହଙ୍କ ଲକ୍ଷଣ ଗୁଡ଼ିକର ସାମ୍ୟ ଦ୍ୱାରା ଅଗ୍ନିପୁରାଣର ପରବର୍ତ୍ତିତ୍ୱ ଜଣା ଯାଉନାହିଁ । ଅଳଂକାରଗୁଡ଼ିକର ଲକ୍ଷଣରେ ବିଶେଷ ପ୍ରଭେଦ ପରିଲକ୍ଷିତ ହୁଏ ନାହିଁ । କୌଣସି ଲେଖକ ଉପମାର ସମାସୋକ୍ତି ପରି ବା ରୂପକରୁ ସ୍ୱଭାବୋକ୍ତି ପରି ଲକ୍ଷଣ ନିର୍ଦ୍ଦେଶ କରି ନ ପାରେ । ତେଣୁ ଲକ୍ଷଣଗତ ସାମ୍ୟରହିବା ଏକପ୍ରକାର ଅପରିହାର୍ଯ୍ୟ । ଦ୍ୱିତୀୟରେ ଲକ୍ଷଣ ନିର୍ଦ୍ଦେଶ କଲାବେଳେ ଏମାନେ ବହୁ ଅକ୍ଷର ବିଶିଷ୍ଟ ଛନ୍ଦ ବ୍ୟବହାର କରି ନାହାନ୍ତି । ଅଳ୍ପ କେତେଗୋଟି ମାତ୍ର

ଶବ୍ଦରେ ଲକ୍ଷଣ ନିର୍ଦ୍ଦେଶ କରାଯାଇଛି । ସୁତରାଂ କେହି ତାହାର ଅନୁକରଣ ନ କଲେ ମଧ୍ୟ ଲକ୍ଷଣ ନିର୍ଦ୍ଦେଶବେଳେ ବିଷୟଗତ ସମତା ହେତୁ ଲକ୍ଷଣ-ପ୍ରଣାଳୀଗତ ସାମ୍ୟ ରହିବା ଅସମ୍ଭବ ବା ଅସଂଗତ ନୁହେଁ । ତେଣୁ ଏ ଯୁକ୍ତି ସର୍ବଥା ଅମୂଳକ ।

[ଙ] ଏ ଯୁକ୍ତିରୁ ବିଶେଷ କିଛି ସାରକଥା ପ୍ରକାଶ ପାଏ ନାହିଁ । ଭରତ ପୁରାଣଗ୍ରନ୍ଥ ଥିବା ଜାଣି ଥିଲେ କିନ୍ତୁ ଅଗ୍ନିପୁରାଣର ନାମ ଉଲ୍ଲେଖ ନ କରି ଥିବାରୁ ଯେବେ ଅନ୍ୟମାନଙ୍କ ମତରେ ଅଗ୍ନିପୁରାଣ ହେଉଛି ପରବର୍ତ୍ତୀ ଗ୍ରନ୍ଥ, ତେବେ ସେ ଯୁକ୍ତିରେ ଦେଖିଲେ ଅଗ୍ନିପୁରାଣ, କେବଳ ଚତୁର୍ଦ୍ଦଶ ଶତାବ୍ଦୀରେ ଉଲ୍ଲିଖିତ ହୋଇଥିବାରୁ ଏବଂ ତ୍ରୟୋଦଶ ଶତାବ୍ଦୀର କୌଣସି ଲେଖକ ତାର ଉଲ୍ଲେଖ କରି ନ ଥିବାରୁ ତାହା ତ୍ରୟୋଦଶ ଶତାବ୍ଦୀର ଶେଷ ଭାଗରେ ଲେଖା ଯାଇଥିବା ସମ୍ଭବ ବୋଲି ସିଦ୍ଧାନ୍ତ କରାଯିବ । ଏହା କିନ୍ତୁ କେତେ ହାସ୍ୟାସ୍ପଦ ତାହା ବିଶ୍ଳେଷଣ କରିବା ଦରକାର ନାହିଁ ।

ଏ ସବୁ ଆଲୋଚନାର ଶେଷରେ ଏତିକି ମାତ୍ର କୁହାଯାଇ ପାରେ ଯେ, ଭରତଙ୍କ ସମୟ ଯେବେ ଆଜକୁ ପ୍ରାୟ ତିନି ହଜାର ବର୍ଷ ଏବଂ କାଳିଦାସଙ୍କ ସମୟ ଖ୍ରୀଷ୍ଟ ପୂର୍ବ ପ୍ରଥମ ଶତାବ୍ଦୀ ବୋଲି ଧରାଯାଏ, ତେବେ ଅଗ୍ନିପୁରାଣ ଏ ମଧ୍ୟବର୍ତ୍ତୀ କାଳରେ ରଚିତ ହୋଇଥିବା ନିଶ୍ଚିତ ।

## ଅଗ୍ନିପୁରାଣରେ ଅଲଂକାର ଶାସ୍ତ୍ର :—

ଅଗ୍ନିପୁରାଣର ମୂଲ୍ୟ ପୁରାଣ ଦୃଷ୍ଟିରୁ ଯାହାହେଉ ପଛେ ଅଲଂକାରର ଇତିହାସରେ ଏହାର ଆସନ ଅତି ଉଚ୍ଚ । ନାଟ୍ୟଶାସ୍ତ୍ର

ପରେ ଅଗ୍ନିପୁରାଣ ଯେବେ ପ୍ରଥମ ଅଲଂକାର ଗ୍ରନ୍ଥ ବୋଲି ଧରାଯାଏ, ଏହାର ଗୌରବ ସର୍ବଥା ସ୍ୱୀକରଣୀୟ । ଅଲଂକାର ଶାସ୍ତ୍ରର କଳେବର ଆଜି ଯେଉଁ ବିଶାଳ ଆକାର ଧାରଣ କରିଛି, ତାହାର ମୂଳଦୁଆ ପଡ଼ିଥିଲା ଅଗ୍ନିପୁରାଣରେ । ବ୍ୟାସଦେବଙ୍କ ସମୟରେ, ଆଜକୁ ଚାରି ହଜାରରୁ ବେଶୀ ବର୍ଷତଳେ ମଧ୍ୟ ଭାରତୀୟ ସାହିତ୍ୟ ଗଗନ ନିଜର ବିପୁଳ ବକ୍ଷରେ ଯେ କି ଉଜ୍ଜ୍ୱଳ ନକ୍ଷତ୍ରମାନଙ୍କୁ ଧାରଣ କରିବସିଥିଲା, ତାହାର ମୂଳ ସାକ୍ଷୀରୂପେ ଅଧୁନିକ ଶିକ୍ଷିତ ସମାଜରେ ଅନାଦୃତ, ଏପରିକି ସ୍ଥଳ ବିଶେଷରେ ଅଶ୍ରୁତ ନାମା ଅଗ୍ନିପୁରାଣ ଆଜି ଆମର କୌତୂହଳ ଉଦ୍ଦୀପନ କରେ । କାବ୍ୟର ଲକ୍ଷଣଠାରୁ ନାଟକ ଓ ରସ ପ୍ରକରଣ ସହ କାବ୍ୟର ଦୋଷଗୁଣ ପର୍ଯ୍ୟନ୍ତ ସନ୍ନିବେଶିତ କରି ଲେଖକ ଐତିହାସିକ ଜଗତର ଯଥେଷ୍ଟ ଉପକାର କରିଛନ୍ତି । ଖ୍ରୀଷ୍ଟଜନ୍ମର ବହୁ ବର୍ଷପରେ ଅଲଂକାର ଶାସ୍ତ୍ରର ଧାରାବାହିକ ଚର୍ଚ୍ଚା ଓ ଗ୍ରନ୍ଥପ୍ରଣୟନ ହୋଇଛି ସତ୍ୟ । ମାତ୍ର ଅଗ୍ନିପୁରାଣ ଯୁଗରେ ସେ ଗୁରୁତ୍ୱର ବୀଜ ନିହିତ ଥିଲା ।

---

# ପଞ୍ଚମ ପରିଚ୍ଛେଦ

## ଅଗ୍ନିପୁରାଣଠାରୁ—ଖ୍ରୀଷ୍ଟିୟ ୮୫୦ ପର୍ଯ୍ୟନ୍ତ

### ମେଧାବୀ

ଅଗ୍ନିପୁରାଣ ପରେ ଭାମହଙ୍କର କାବ୍ୟାଳଂକାର ହେଉଛି ତାହାର ନିକଟତମ ପରବର୍ତ୍ତୀ ଗ୍ରନ୍ଥ । କିନ୍ତୁ ଅନ୍ୟ ଜଣେ ଦୁଇଜଣ ଆଳଂକାରିକଙ୍କ ପ୍ରତି ବେଳେବେଳେ କାରଣରୁ ସର୍ବଥା ଦୃଷ୍ଟି ଦେବାକୁ ହୁଏ । ସେ ମଧ୍ୟରେ ମେଧାବୀଙ୍କ ନାମ ପ୍ରଥମେ ଉଲ୍ଲେଖ୍ୟ । ଭାମହ ମେଧାବୀଙ୍କ ନାମୋଲ୍ଲେଖ କରିଛନ୍ତି । ରୁଦ୍ରଟଙ୍କର ପ୍ରସିଦ୍ଧଗ୍ରନ୍ଥ 'କାବ୍ୟାଳଂକାର' ଉପରେ ଟୀକା ଲେଖିବାକୁ ଯାଇ ଟୀକାକାର ନମି ସାଧୁ ପ୍ରସଙ୍ଗକ୍ରମେ ମେଧାବୀରୁଦ୍ର, ଦଣ୍ଡୀ, ଭାମହ ପ୍ରଭୃତିଙ୍କ ନାମୋଲ୍ଲେଖ କରିଛନ୍ତି । ତେବେ ଭାମହଙ୍କ 'ମେଧାବୀ' ଓ ନମିସାଧୁଙ୍କ 'ମେଧାବୀରୁଦ୍ର' ଜଣେ ନା ଦୁଇଜଣ ବ୍ୟକ୍ତି ? ଏ ଦୁଇ ଗ୍ରନ୍ଥର ପ୍ରମାଣ ବା ସୂଚନା ଛାଡ଼ିଦେଲେ, ଅନ୍ୟ କୌଣସି ଗ୍ରନ୍ଥରେ ମେଧାବୀଙ୍କ ନାମ ମିଳୁନାହିଁ । ଅନୁମାନ କରାଯାଏ, ଯେପରି ଧର୍ମକୀର୍ତ୍ତି 'କୀର୍ତ୍ତି' ନାମରେ ପରିଚିତ, ଅଥବା ଯେପରି ଭର୍ତ୍ତୃହରି 'ହରି' ନାମରେ ମଧ୍ୟ ଅଭିହିତ, ସେହିପରି ମେଧାବୀ ନାମରେ ମେଧାବୀରୁଦ୍ର ସୂଚିତ ହୋଇଛନ୍ତି ମାତ୍ର । କିନ୍ତୁ ଅନ୍ୟ ଏକ ନାମଦ୍ୱାରା ଏ ସମସ୍ୟାର ଜଟିଳତା ବହୁଗୁଣରେ ବୃଦ୍ଧି ପାଇଛି । ତ୍ରିକାଣ୍ଡ ଶେଷରେ କାଳିଦାସଙ୍କର ଅନ୍ୟ ଏକ ନାମ ମେଧାରୁଦ୍ର ଥିବାକଥା ଲେଖା ଅଛି । ତେବେ କଣ ଉପର୍ଯ୍ୟୁକ୍ତ

ସମସ୍ତେ ଜଣେ ଲୋକ, ଏ ସନ୍ଦେହ ସ୍ୱତଃ ଉଦିତ ହୁଏ । ଗବେଷଣାରୁ ଜଣାଯାଏ, ଯେବେ ନିର୍ଭ୍ରାନ୍ତ ଶେଖରର ଉକ୍ତ ବିବରଣୀ ସତ୍ୟ, ତେବେ କାଳିଦାସଙ୍କର ଅନ୍ୟ ଦୁଇଟି ନାମ ସହିତ କୌଣସି ସମ୍ବନ୍ଧ ନ ରହିବା ମଧ୍ୟ ସତ୍ୟ ।

ଅବଶ୍ୟ କାଳିଦାସଙ୍କ ସମୟ ଅଗ୍ନିପୁରାଣ ଓ ଭାମହଙ୍କ ମଧ୍ୟ-ବର୍ତ୍ତୀ । ସେ ମଧ୍ୟ ଯେ ଜଣେ ଅସାଧାରଣ ଆଳଂକାରିକ ଥିବେ ଏହା ସହଜରେ ଅନୁମାନ କରାଯାଇ ପାରେ । ତଥାପି ତାଙ୍କ ନାମ ସହିତ କୌଣସି ଅଳଂକାର ଗ୍ରନ୍ଥର ସମ୍ପର୍କ ଥିବା ଏପର୍ଯ୍ୟନ୍ତ ଜଣାଯାଇ ନାହିଁ । ଯେଉଁମାନେ ମଧ୍ୟ ମେଧାବୀଙ୍କ ନାମୋଲ୍ଲେଖ କରିଛନ୍ତି, ସେମାନେ 'କାଳିଦାସ' ନାମ ସାହିତ ଉଲ୍ଲେଖ ନ କଲେ—ଯେବେ ଉକ୍ତ ଦୁଇନାମ ବାସ୍ତବରେ କେବଳ ଜଣେ ଲେଖକର । ଏହାଛଡ଼ା କାବ୍ୟମୀମାଂସାର ବିବରଣୀ ଅନୁସାରେ ମେଧାବୀରୁଦ୍ର ଜଣେ ଅଜନ୍ମ ଅନ୍ଧ କବି ।

## ଅନ୍ୟ ଶବ୍ଦରେ "ରୁଦ୍ର" ଯୋଗ—

କେତେକ ପଣ୍ଡିତ ଯୁକ୍ତି କରନ୍ତି, 'ରୁଦ୍ର-ଟ' ହୁଏତ ରୁଦ୍ର ନାମରେ ପରିଚିତ ଥିବେ ଏବଂ ଭାମହ କେବଳ ତାଙ୍କୁ ଲକ୍ଷ କରି-ଛନ୍ତି । କିନ୍ତୁ ମେଧାବୀ ପରେ 'ରୁଦ୍ର' ପଦ ଅନ୍ୟ କେତେକଙ୍କ ନାମ ମଧ୍ୟ ବିଭିନ୍ନ ଗ୍ରନ୍ଥରେ ଉଲ୍ଲିଖିତ ହୋଇଛି । ଶାର୍ଙ୍ଗଧର ପଦ୍ଧତିରେ ଜଣେ ଲେଖକ 'ମାନବରୁଦ୍ର'ଙ୍କର ଏକ ଶ୍ଲୋକ ଉଦ୍ଧୃତ ହୋଇଛି । କପିଳରୁଦ୍ର ମଧ୍ୟ ଜଣେ ଲେଖକ ଥିବା ଜଣାଯାଉଛି । ଭାମହଙ୍କ ଗ୍ରନ୍ଥରେ ମେଧାବୀଙ୍କ ନାମ ଥିବାରୁ ସେ ସର୍ବଥା ଷଷ୍ଠ ଶତାବ୍ଦୀର ପୂର୍ବବର୍ତ୍ତୀ । କିନ୍ତୁ ମେଧାବୀରୁଦ୍ର ଜଣେ କବି, ଠିକ୍ କେଉଁ ସମୟରେ, କଣସବୁ ଲେଖିଥିଲେ, ଜାଣିବାର କୌଣସି ଉପାୟ ନାହିଁ ।

## ଧର୍ମକୀର୍ତ୍ତି

ଏହାଙ୍କର କୌଣସି ସଠିକ ବିବରଣୀ ମିଳୁନାହିଁ। ଧର୍ମକୀର୍ତ୍ତି ନାଗାର୍ଜୁନଙ୍କର 'ପ୍ରମାଣସମୁଚ୍ଚୟ' ଉପରେ ଯେଉଁ ଧର୍ମକୀର୍ତ୍ତି ଟୀକା ଲେଖିଥିଲେ, ସେ ବୋଧହୁଏ ଆଲୋଚିତ ବ୍ୟକ୍ତିଠାରୁ ଅଭିନ୍ନ। ଧ୍ୱନ୍ୟାଲୋକରେ—"ଲାବଣ୍ୟଦ୍ରବିଣ ବ୍ୟୟୋନଗଣିତଃ କ୍ଲେଶୋମହାନର୍ଜିତଃ"—ଏ ଶ୍ଳୋକ ଉଦ୍ଧାର କରି ଲେଖକ ଯଥାସମ୍ଭବ ଏହା ଧର୍ମକୀର୍ତ୍ତିଙ୍କର ବୋଲି କହିଛନ୍ତି। ଅନେକ ଅନୁସନ୍ଧିତ୍ସୁ ପ୍ରଥମେ ପ୍ରଥମେ ଧର୍ମକୀର୍ତ୍ତିଙ୍କୁ ଜଣେ ଆଳଂକାରିକ ବୋଲି ସ୍ୱୀକାର କରି ଅଳଙ୍କାର ସାହିତ୍ୟର ଇତିହାସରେ ଏହାଙ୍କୁ ସ୍ଥାନ ଦେଇଥିଲେ। ଅନ୍ୟ କେତେକ ପଣ୍ଡିତଙ୍କ ମତରେ ସୁବନ୍ଧୁଙ୍କ ବାସବଦତ୍ତାର କୌଣସି ଅଂଶ ପଢ଼ି ଧର୍ମକୀର୍ତ୍ତିଙ୍କୁ ଅଳଂକାରିକ ହିସାବରେ ଗ୍ରହଣ କରିବା ରୂପକ ଭ୍ରାନ୍ତି କେତେକଙ୍କର ସୃଷ୍ଟି ହୋଇଛି। ଧର୍ମକୀର୍ତ୍ତିଙ୍କର ଯେଉଁ ଶ୍ଳୋକ ଧ୍ୱନ୍ୟାଲୋକରେ ଉଦ୍ଧୃତ ହୋଇଛି, ସେଥିରୁ ତାଙ୍କ ଆଳଂକାରିକତା ପ୍ରମାଣିତ କରିହୁଏ ନାହିଁ; ହୁଏତ ସେ ଜଣେ କବିଥିଲେ ଏବଂ ତାଙ୍କ କବିତାରୁ ଉଦାହରଣର ଉପଯୋଗୀ ଗୋଟିଏ ମାତ୍ର ଶ୍ଳୋକ ଧ୍ୱନ୍ୟାଲୋକକାର ଆନନ୍ଦବର୍ଦ୍ଧନ ଉଦ୍ଧାର କରିଛନ୍ତି। ସୁତରାଂ ଧର୍ମକୀର୍ତ୍ତିଙ୍କୁ ଅଳଂକାରିକ ରୂପେ ଅଳଂକାର ସାହିତ୍ୟର ଇତିହାସରେ ସ୍ଥାନ ଦେବା ଏକେବାରେ ଅତି ସମୀଚୀନ ହେବ ନାହିଁ। ତଥାପି ଭବିଷ୍ୟତରେ ଗବେଷଣା ଦ୍ୱାରା କେବଳ ଏ ସନ୍ଦେହ-ପ୍ରତିଷ୍ଠିତ ମତ ତାର ପ୍ରକୃତ ରୂପ ଧରି ତଥ୍ୟ ଅବଗତରେ ଆମର ସହାୟ ହେବ।

## ଭଟ୍ଟି

ଦ୍ୱାବିଂଶ ସର୍ଗାତ୍ମକ ଭଟ୍ଟିକାବ୍ୟ ସଂସ୍କୃତ ସାହିତ୍ୟରାଜ୍ୟରେ ଏକ ନୂତନ ବସ୍ତୁ। ଏହି ନୂତନତା ଗ୍ରନ୍ଥର ବିଷୟବସ୍ତୁ ବା ଛନ୍ଦ

ପ୍ରକୃତ କୌଣସି ବସ୍ତୁ ଉପରେ ପ୍ରତିଷ୍ଠିତ ନ ହୋଇ ହୋଇଛି କେବଳ ଶବ୍ଦର ବ୍ୟବହାରରେ । ସମସ୍ତ କବିଶ୍ରେଷ୍ଠ ଭାବସଙ୍କର ଅଭିବ୍ୟକ୍ତି ଲାଗି ଶବ୍ଦ ବ୍ୟବହାର କରିଛନ୍ତି । ଭଟ୍ଟିରେ କିନ୍ତୁ ସବୁ ଯେପରି ଶବ୍ଦମାନଙ୍କର ବ୍ୟବହାର ଲାଗି ବିଷୟବସ୍ତୁର ନିୟନ୍ତ୍ରଣ ହୋଇଛି । ଏ କାବ୍ୟଟି ଗ୍ରୁଭାଗରେ ବିଭକ୍ତ—

୧ । ପ୍ରକୀର୍ଣ୍ଣ କାଣ୍ଡ [୧—୫ ସର୍ଗ ] ୨ । ଅଧିକାର କାଣ୍ଡ । [ ୬—୯ ସର୍ଗ ] ୩ । ପ୍ରସନ୍ନ କାଣ୍ଡ [ ୧୦—୧୩ ସର୍ଗ ୪ । ତିଙନ୍ତ କାଣ୍ଡ [ ୧୪—୨୨ ସର୍ଗ ]

ଭଟ୍ଟିଙ୍କ ଅଳଂକାର—

ଭଟ୍ଟିଙ୍କୁ ଜଣେ ଆଳଂକାରିକ ରୂପେ ଏ ଗ୍ରନ୍ଥରେ ଆଲୋଚନା କରି ଯାଉଥିବା ଦେଖି ଅନେକ ପାଠକ ଅଶ୍ଚର୍ଯ୍ୟାନ୍ୱିତ ହେବେ ଏବଂ ଧର୍ମକୀର୍ତ୍ତିଙ୍କ ତୁଲ୍ୟ ଏହାକୁ କବି ହିସାବରେ କେବଳ ବିଶ୍ରୁତ କରିବାକୁ ଉଦ୍ୟତ ହେବେ । କିନ୍ତୁ ପ୍ରକୃତ କଥା ହେଉଛି, ଅଳଂକାର ଶାସ୍ତ୍ରର ଅନେକ ବିଷୟ ଆଳଂକାରିକ କ୍ରମରେ ଭଟ୍ଟି ଆଲୋଚନା କରିଛନ୍ତି । ଦଶମ, ଏକାଦଶ ଓ ତ୍ରୟୋଦଶ—ଏ ତିନୋଟି ସର୍ଗ ଅଳଂକାର ଶାସ୍ତ୍ର ଦୃଷ୍ଟିରୁ ମଧ୍ୟ ବଡ଼ ପ୍ରଣିଧାନର ବିଷୟ । ଦଶମ ସର୍ଗରେ ସେ ପ୍ରାୟ ୫୦ଗୋଟି ଅଳଂକାରର ଉଦାହରଣ ଦେଇଛନ୍ତି । ନିମ୍ନଲିଖିତ କ୍ରମରେ ତହିଁରେ ଯମକ ଅଳଂକାରର ଉଦାହରଣ ଦିଆଯାଇଛି—ଯୁକ୍ପାଦ ଯମକ, ପାଦାନ୍ତ ଯମକ, ପାଦାଦିଯମକ, ପାଦ ମଧ୍ୟ ଯମକ, ଚକ୍ରବାଳ ଯମକ, ସମୁଦ୍ଗ ଯମକ, କାଞ୍ଚୀ ଯମକ, ଯମକାବଳୀ, ଅଯୁଗ୍ମପାଦ ଯମକ, ପାଦାଦ୍ୟନ୍ତ ଯମକ, ମିଥୁନ ଯମକ, ବୃନ୍ତ ଯମକ, ପୁଷ୍ପ ଯମକ, ପାଦାଦି ମଧ୍ୟ ଯମକ, ବିପଥ ଯମକ, ମଧ୍ୟାନ୍ତଯମକ ଗର୍ଭଯମକ, ସର୍ବଯମକ, ମହାଯମକ, ଆଦ୍ୟାନ୍ତଯମକ । ଏ ମଧ୍ୟରୁ ଦୁଇଟିର ଦୃଷ୍ଟାନ୍ତ ତଳେ ଦିଆଗଲା :—

ସର୍ବପମକ—

ବରୌମିରୁଦ୍ଧ୍ୱାନ ବକୃତଃ ସମୁଦ୍ରୋ
ବରୌ ମରୁଦ୍ଧ୍ୱାନ୍ ବକୃତଃ ସମୁଦ୍ରଃ
ବରୌ ମରୁଦ୍ଧ୍ୱାନ ବକୃତଃ ସମୁଦ୍ରୋ।
ବରୌ ମରୁଦ୍ଧ୍ୱାନ୍ ବକୃତଃ ସମୁଦ୍ରଃ ।'

ଗର୍ଭପମକ—

"ଉଦପତଦ୍ ବପୁର ପ୍ରଗମଃ ପରୈ
ରୁଚିର ମୂଳଭ ମପୃଥୁ ସତ୍ତ୍ୱବତ
ରୁଚିର ମୂଳଭ ମପୃଥୁ ସତ୍ତ୍ୱବତ
ପ୍ରଭବଧାସ୍ତ୍ର ବପୁର୍ଭସ୍ତଦଂ ହ ଖାମ୍ ।"

ଏକାଦଶ ସର୍ଗରେ ମାଧୁର୍ଯ୍ୟ ଗୁଣର ଉଦାହରଣ ସ୍ୱରୂପେ ପ୍ରାୟ ୫୦ଟି ଶ୍ଳୋକ ଦିଆଯାଇଛି । ଦଣ୍ଡୀ ଏବଂ ଭାମହ ଯେଉଁ କ୍ରମରେ ଅଳଂକାରମାନଙ୍କର ଆଲୋଚନା କରିଛନ୍ତି, ଭଟ୍ଟିଙ୍କ ଲେଖାରେ ସେହି କ୍ରମ ନାହିଁ । ଭଟ୍ଟି ହେତୁ ଏବଂ ବାର୍ତ୍ତା ନାମକ ଦୁଇଟି ଅଳଂକାରର ଦୃଷ୍ଟାନ୍ତ ଦେଇଛନ୍ତି । ମାତ୍ର ଭାମହଙ୍କ ମତରେ ଏ ଦୁଇଟି ଆଦୌ ଅଳଂକାରର ଯୋଗ୍ୟ ନୁହନ୍ତି । ଏହାଛଡ଼ା ଭଟ୍ଟି 'ନିପୁଣ' ନାମକ ଅନ୍ୟ ଏକ ଅଳଂକାର ଆଲୋଚନା କରିଛନ୍ତି । କିନ୍ତୁ ଦଣ୍ଡୀ ଓ ଭାମହ ଏ ଦୁହିଁଯାକ କୌଣସିଠାରେ ଏ ଅଳଂକାରର ଉଲ୍ଲେଖ କରିନାହାନ୍ତି । ଅନ୍ୟ ଦଗରେ ଦେଖିବାକୁ ଗଲେ ଦଣ୍ଡୀଙ୍କ ମତରେ 'ଲେଶ' ଓ 'ସୂକ୍ଷ୍ମ' ଅଳଂକାର ଦୁଇଟି ପ୍ରାଧାନ୍ୟରେ କମ୍ ନୁହନ୍ତି ।

କିନ୍ତୁ ଭଟ୍ଟି ବୋଧହୁଏ ଏ ଦୁଇଟି ଜାଣି ନ ଥିଲେ । ଏ ସବୁ ବସ୍ତୁରୁ ଜଣାଯାଏ, ଭଟ୍ଟି ନିଜ ପୂର୍ବବର୍ତ୍ତୀ ଅନ୍ୟ କୌଣସି ପ୍ରସିଦ୍ଧ

ଅଳଂକାର ଶାସ୍ତ୍ରର ଅବଲମ୍ବନ କରିଥିଲେ ଅଥବା ଅସୀମ ପାଣ୍ଡିତ୍ୟ ବଳରେ କେତେ ନୂତନ ଅଳଂକାର ସୃଷ୍ଟି କରିଥିଲେ । ତ୍ରୟୋଦଶ ସର୍ଗରେ ପ୍ରାପ୍ତ ଅର୍ଦ୍ଧଶତ ଶ୍ଳୋକ ଦେଖାଯାଏ, ଯାହା ପଢିଲେ ଭାଷା ସଂସ୍କୃତ କି ପ୍ରାକୃତ ଜାଣି ହୁଏ ନାହିଁ । ବସ୍ତୁତଃ ବ୍ୟବହୃତ ଶବ୍ଦ ଗୁଡ଼ିକ ଉଭୟ ଭାଷାରେ ସମାନ । ଗୋଟିଏ ଉଦାହରଣ ତଳେ ଦିଆଗଲା :—

ଚାରୁସମୀରଣରମଣେ ହରିଣକଳଙ୍କକିରଣାବଳୀସବିଳାସା ।
ଆବଦ୍ଧରାମମୋହା ବେଳାମୂଳେ ବିଭାବରୀ ପରିହୀଣା ।।

ଭଟ୍ଟିଙ୍କର ସମୟ ନିରୂପଣ ବିଶେଷ କଷ୍ଟକର ନୁହେ । ସେ ଲେଖିଛନ୍ତି *ଯେ ବଲ୍ଲଭୀରେ ଶ୍ରୀଧର ସେନଙ୍କ ପ୍ରେରଣାରେ ସେ ଏ ଗ୍ରନ୍ଥ ଲେଖିଥିଲେ । ବଲ୍ଲଭୀ ଆଧୁନିକ କାଠିଆୱାଡ଼ର ଅନ୍ତର୍ଗତ । ସେଠାର ତାମ୍ରାନୁଶାସନରୁ ପ୍ରଥମଧର ସେନଙ୍କ ସମୟ ଖ୍ରୀ ୫୦୦ ଏବଂ ଶେଷଧର ସେନଙ୍କ ସମୟ ଖ୍ରୀ ୬୫୦ ବୋଲି ଜଣା ଯାଇଛି । ତେଣୁ ଭଟ୍ଟି ଷଷ୍ଠ ଶତାବ୍ଦୀର ଶେଷାର୍ଦ୍ଧରେ ବା ସପ୍ତମ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଥିଲେ ବୋଲି ନିରୂପଣ କରି ଯାଇପାରେ ।

## ଭାମହ

ଭାମହଙ୍କ ପ୍ରଣୀତ, 'କାବ୍ୟାଳଂକାର' ଏକ ପ୍ରଧାନ ଅଳଂକାର ଗ୍ରନ୍ଥ । ଏହା ଛଅଗୋଟି ପରିଚ୍ଛେଦରେ ବିଭକ୍ତ । ତଳେ ଗ୍ରନ୍ଥାଲୋଚିତ ବିଷୟମାନଙ୍କର ଦିଗ୍‌ଦର୍ଶନ କରାଯାଉଛି ମାତ୍ର :—

ପ୍ରଥମ ପରିଚ୍ଛେଦ—କାବ୍ୟ ଉଦ୍ଦେଶ, କାବ୍ୟସାଧନ, କାବ୍ୟ ଓ କାବ୍ୟ ଭେଦ ।

---

*କାବ୍ୟମିଦଂ ବିହିତଂ ମୟା ବଲଭ୍ୟାଂ
ଶ୍ରୀଧର ସେନନରେନ୍ଦ୍ର ପାଳିତାୟାମ୍
(ଭଟ୍ଟି ୨୨ ସର୍ଗଶେଷ ଶ୍ଳୋକ)

ଦ୍ୱିତୀୟ „ —ଗୁଣ ବର୍ଣ୍ଣନ, ମାଧୁର୍ଯ୍ୟ, ପ୍ରସାଦ, ଓଜଃ ।
ତୃତୀୟ „ —ଉପମା, ଯମକ ପ୍ରଭୃତି ୪୦ ଅଳଂକାର ବର୍ଣ୍ଣନ ।
ଚତୁର୍ଥ „ —କାବ୍ୟ-ଦୋଷ ଆଲୋଚନା ।
ପଞ୍ଚମ „ —କାବ୍ୟର ଏକାଦଶ ଦୋଷ ମଧ୍ୟରୁ ଶେଷଟିର ଆଲୋଚନା
ଷଷ୍ଠ „ —ସତ୍‌କାବ୍ୟ ରଚନାପାଇଁ କେତେକ ସୂଚନା ।

**ଭାମହଙ୍କ ପରିଚୟ—**

ଭାମହଙ୍କ ଇତିହାସ ଏ ପର୍ଯ୍ୟନ୍ତ ଜଣାଯାଇ ନାହିଁ । ତାଙ୍କର ଗୋଟିଏ ଶ୍ଳୋକରୁ ଜଣାଯାଏ, ତାଙ୍କ ପିତାଙ୍କ ନାମ ରକ୍ତିଲଗୋମୀ । ଚନ୍ଦ୍ରଗୋମୀ ବ୍ୟାକରଣର [ଯଥା:—ପାଣିନି ବ୍ୟାକରଣ] ଏକସୂତ୍ରକୁ ଅବଲମ୍ବନ କରି ଅଧ୍ୟାପକ ଏବଂ ଅଧ୍ୟାପକ ଓ ଅଧ୍ୟାପକ ପାଠକୁ ସୂଚିତ କରିଛନ୍ତି, ଗୋମୀଯୁକ୍ତ ନାମ ବୌଦ୍ଧ ଧର୍ମର ସୂଚକ । ତେଣୁ ରକ୍ତିଲ ଗୋମୀ ବୌଦ୍ଧ ଥିଲେ । କିନ୍ତୁ ଅନେକ ପଣ୍ଡିତ ଏ ମତବାଦର ତୀବ୍ର ସମାଲୋଚନା କରିଛନ୍ତି । ବିଭିନ୍ନ ଧର୍ମାବଲମ୍ବୀ ଯେବେ ବହୁକାଳ ପର୍ଯ୍ୟନ୍ତ ଏକତ୍ର ଅବସ୍ଥାନ କରନ୍ତି, ତେବେ ପରସ୍ପରର ପ୍ରଭାବ ପରସ୍ପର ଉପରେ ପଡ଼ିବା ସ୍ୱାଭାବିକ କଥା । ତେଣୁ କେବଳ ଲେଖକର ନାମରୁ ଧର୍ମ ନିର୍ଣ୍ଣୟ କରିବା ସହଜ ନୁହେ । ଗ୍ରନ୍ଥଗତ ବିଷୟ ଦୃଷ୍ଟିରୁ ଆଲୋଚନା କଲେ ତାଙ୍କୁ ବୌଦ୍ଧ କହିବାର କୌଣସି କାରଣ ଦେଖାଯାଏ ନାହିଁ । ନିମ୍ନରେ ପ୍ରଦତ୍ତ ହୋଇଥିବା ଯୁକ୍ତି ଗୁଡ଼ିକରୁ ଏ କଥା ବଡ଼ ନିର୍ମଳ-ଭାବେ ବୁଝାଯିବ ।

[କ] ଭାମହ ବହୁସ୍ଥଳରେ ହିନ୍ଦୁଦେବୀଙ୍କର ନାମୋଲ୍ଲେଖ କରିଛନ୍ତି, କିନ୍ତୁ ବୌଦ୍ଧ ଧର୍ମମତର ସତ୍ତା ତହିଁରେ ନାହିଁ ।

[ଖ] ବେଦୋପଯାୟୀ ରାଜାମାନଙ୍କର ବିଶେଷ ପ୍ରଶଂସା କରାଯାଇଛି । ବେଦର ପ୍ରାମାଣିକତା ସ୍ୱୀକାର କରୁ ନ ଥିବା ବୌଦ୍ଧମାନେ

ତେବେ ହେଲେ ସଙ୍କରୂପୀ ପ୍ରଧାନ ବୈଦିକ କ୍ରିୟାର ଅଙ୍ଗୀଭୂତ ସୋମପାନର ପ୍ରଶଂସା କରନ୍ତି ନାହିଁ । ତେଣୁ ଭାମହ ସର୍ବଥା ବୈଦିକ ଥିବା ସମ୍ଭାବନା ।

[ଗ] ବୌଦ୍ଧ ଓ ଜୈନମାନେ ହିନ୍ଦୁଧର୍ମର କେବଳ ଧର୍ମଗ୍ରନ୍ଥ ବାହାର କ ସ୍ଥଳ ବିଶେଷରେ ବୈଷୟିକ ଗ୍ରନ୍ଥମାନଙ୍କର ସମାଲୋଚନା କରିଥିବା ଦେଖାଯାଏ । ମଧ୍ୟ ସାର କୌଟିଲ୍ୟ ଅର୍ଥଶାସ୍ତ୍ରର ମଧ୍ୟ ସମାଲୋଚନା କରିଛନ୍ତି । *ଭାମହ ହିନ୍ଦୁଧର୍ମର ପ୍ରଧାନ ଗ୍ରନ୍ଥ ରାମାୟଣ ଓ ମହାଭାରତର ବହୁଧା ଉଲ୍ଲେଖ କରିଛନ୍ତି ।

[ଘ] ପୁଣି ଶବ୍ଦଶକ୍ତି ସମ୍ବନ୍ଧରେ ବୌଦ୍ଧମାନଙ୍କର ଯେଉଁ ଅପୋହବାଦ ଅଛି, ତାହା ଭାମହ ଖଣ୍ଡନ କରିଛନ୍ତି । ବୌଦ୍ଧପକ୍ଷେ ଏହା ସମ୍ଭବ ନୁହେ ।

[ଙ] ପ୍ରସ୍ତାବିତ ମତ ବିରୁଦ୍ଧରେ ଏକ ପ୍ରଧାନ ଯୁକ୍ତି ଏହି ଯେ ଗ୍ରନ୍ଥମୂଳରେ ଲେଖକ ସାର୍ବ ସର୍ବଜ୍ଞଙ୍କୁ ନମସ୍କାର କରିଛନ୍ତି । ପ୍ରଥମ-ମତବାଦୀମାନେ ଅର୍ଥ କରନ୍ତି, ସର୍ବଜ୍ଞ ହେଉଛନ୍ତି ବୁଦ୍ଧ ଦେବଙ୍କର ଏକ ନାମ । ତେଣୁ ତାଙ୍କୁ ନମସ୍କାର କରି ଯାଇଥିବାରୁ ଭାମହ ନିଶ୍ଚୟ ବୌଦ୍ଧ । ଏ ମତର ସମାଲୋଚକମାନେ କହନ୍ତି, ସାର୍ବ ଶବ୍ଦର ଅର୍ଥ ସମସ୍ତଙ୍କ [ମଙ୍ଗଳ] ନିମନ୍ତେ [ ସର୍ବସ୍ମୈ ହିତମ୍ ] ଏବଂ ସର୍ବଜ୍ଞ ହେଉଛନ୍ତି ମହାଦେବଙ୍କର ଅନ୍ୟ ଏକ ନାମ । 'ସର୍ବଜ୍ଞ'ର ଏଭ ଅର୍ଥ ସଙ୍ଗେ ଉପର କଥିତ ଅନ୍ୟ ଯୁକ୍ତିଗୁଡ଼ିକର ଧାରାବାହିକ ବିଗ୍ଭର କଲେ ଉପଲବ୍ଧ ହୁଏ, ଭାମହ ହିନ୍ଦୁ ଧର୍ମାବଲମ୍ବୀ ଥିବା ଅଧିକ ସଙ୍ଗତ ।

---

*ଚନ୍ଦ୍ରପ୍ରସାଦ ତ୍ରିବେଦୀଙ୍କ ନ୍ୟାୟ ଭୂଷାଭୂମିକା ସଙ୍ଗତ ଦ୍ରଷ୍ଟବ୍ୟ ।

## ଭାମହଙ୍କ ଅଲଂକାରିକତା—

ଭାମହ ଜଣେ ବଡ଼ କବି ଥିଲେ । ତାଙ୍କ ନିଜ ଉକ୍ତି ଅନୁସାରେ ସେ ସ୍ୱୀୟ ଗ୍ରନ୍ଥ ପ୍ରବନ୍ଧ ସକଳ ଉଦାହରଣ ଶ୍ଳୋକ ରଚନା କରିଛନ୍ତି । ଭାମହଙ୍କ ମତରେ କାବ୍ୟ, ଗଦ୍ୟ ଓ ପଦ୍ୟ ଭେଦରେ ଦୁଇ ପ୍ରକାର । ଭାଷା ଦୃଷ୍ଟିରୁ ସେ ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ଭେଦରେ କାବ୍ୟର ତିନିଗୋଟି ବିଭାଗ କରିଛନ୍ତି । ସର୍ଗବନ୍ଧ, ଅଭିନେୟାର୍ଥ, ଆଖ୍ୟାୟିକା, କଥା ଓ ଅନିବଦ୍ଧ ଭେଦରେ କାବ୍ୟର ଅନ୍ୟ ଏକ ବିଶ୍ଳେଷଣ ମଧ୍ୟ କରିଛନ୍ତି । ଅଭିନେୟାର୍ଥ ବା ନାଟକର ବିସ୍ତୃତ ଅନ୍ୟମାନେ କରିଥିବାରୁ ଉକ୍ତ ବିଭାଗର ସେ ଆଲୋଚନା କରିନାହାନ୍ତି । ଅଲଂକାର ପ୍ରକରଣରେ ତାଙ୍କ ବ୍ୟକ୍ତିତ୍ୱ ତଥା ମୌଳିକତା ସ୍ପଷ୍ଟ ଫୁଟି ଉଠିଛି । ତାଙ୍କ ମତରେ ହେତୁ, ସୂକ୍ଷ୍ମ, ଲେଶ ଓ ବାର୍ତ୍ତା—ଏ ଗୁଡ଼ିକ ଅଲଂକାର ନାମରେ ଯୋଗ୍ୟ ନୁହନ୍ତି । ଏ ମତବାଦର ହେତୁ ସ୍ୱରୂପେ ସେ ନିଜର କାବ୍ୟାସ୍ୱାଦ ଉପସ୍ଥାପିତ କରିଛନ୍ତି । ତାଙ୍କ ମତରେ ବକ୍ରୋକ୍ତି ହେଉଛି କାବ୍ୟର ଆତ୍ମା । ତେଣୁ ବକ୍ରୋକ୍ତିର ଅଭାବରେ ହେତୁ, ସୂକ୍ଷ୍ମ ପ୍ରଭୃତିଠାରେ ଅଳଂକାରତ୍ୱ ରହି ପାରିବ ନାହିଁ । କାବ୍ୟକୁ ଉଚ୍ଚ ଦରର କରିବାକୁ ହେଲେ କବି ପକ୍ଷେ ଶବ୍ଦ ବିନ୍ୟାସ ଭଙ୍ଗୀ ଯେ ସର୍ବ ପ୍ରଥମେ ପ୍ରଣିଧାନର ବିଷୟ, ଏହା ସେ ସର୍ବତୋଭାବେ ହୃଦୟଙ୍ଗମ କରିଛନ୍ତି ଏବଂ ସୌଷ୍ଠବ୍ୟ ସମ୍ପାଦନର ପନ୍ଥା ନିର୍ଦ୍ଦେଶ କରିବାକୁ ଯାଇ ଷଷ୍ଠ ପରିଚ୍ଛେଦରେ ତାର ବିସ୍ତୃତ ବିଚାର କରିଛନ୍ତି । ଭାମହ ନିଜ ପୂର୍ବବର୍ତ୍ତୀ ଯେତେ ଗ୍ରନ୍ଥକାର ଓ ଗ୍ରନ୍ଥର ନାମୋଲ୍ଲେଖ କରିଛନ୍ତି, ସେ ମଧ୍ୟରେ ଏଗୁଡ଼ିକ ଅନ୍ୟତମ:— ରାମଶର୍ମାଙ୍କର ଅଚ୍ୟୁତୋତ୍ତର, ଅଶ୍ମକବଂଶ, କଣଭକ୍ଷ, ନ୍ୟାସ, ପାଣିନି ମେଧାବୀ, ବୃହତ୍-କଥା, ରାଜମିତ୍ର, ଶାଖାବର୍ଦ୍ଧନ ଓ ନରବାହନ ଦତ୍ତ । ଏ ନାମ ଗୁଡ଼ିକରୁ ଅଳ୍ପ କେତେଗୋଟି

ମାତ୍ର ଅନ୍ୟତ୍ର ଉଲ୍ଲିଖିତ ହୋଇଛି । ସଂସ୍କୃତ ସାହିତ୍ୟର ଇତିହାସ-ରେ ଲେଖକ ଓ ଗ୍ରନ୍ଥମାନଙ୍କର ପୂର୍ବାପରତା ନିରୂପଣବେଳେ ଏ ନାମ ଗୁଡ଼ିକର ଉପାଦେୟତା ଖୁବ୍ ବେଶୀ ।

## ଦୁଇଜଣ ଭାମହ ?—

ଭାରରୁଚ ବ୍ୟାକରଣ ଉପରେ ମଧ୍ୟ 'ଭାମହ'ଙ୍କର ଏକ ଟୀକା ଲେଖାଥିବା ବର୍ତ୍ତମାନ ଜଣା ଯାଇଛି । କିନ୍ତୁ ଆଳଂକାରିକ 'ଭାମହ' ବୈୟାକରଣ 'ଭାମହ'ଙ୍କଠାରୁ ଅଭିନ୍ନ କି ନା ଜାଣିବାର ଉପାୟ ନାହିଁ । ତେବେ କାବ୍ୟାଳଂକାରର ରଚନା ଭଙ୍ଗୀରୁ ଲେଖକଙ୍କର ବ୍ୟାକରଣ ଶାସ୍ତ୍ରରେ ଦକ୍ଷତାଥିବା ଭଲଭାବେ ଜଣା ଯାଉଛି । ପୁଣି ଅଳଂକାରିକ 'ଭାମହ' ପାଣିନି ବ୍ୟାକରଣର ପ୍ରଶଂସା କରିଛନ୍ତି । ଏ ଦିଗରୁ ଦେଖିଲେ ଏବଂ ବାରରୁଚ ବ୍ୟାକରଣର ଟୀକାକାର ରୂପେ ଅନ୍ୟ ଜଣେ ଭାମହଙ୍କ ସତ୍ତା ଦୃଢ଼ଭାବେ ପ୍ରମାଣିତ ହୋଇ ନ ଥିବାରୁ ଏ ଦୁହିଁଙ୍କୁ ଏକ ବ୍ୟକ୍ତି ବୋଲି ସ୍ୱୀକାର କରାଯାଇ ପାରେ । ତଥାପି ଭବିଷ୍ୟତର ଗବେଷଣା ଉପରେ ଏ ସିଦ୍ଧାନ୍ତର ସତ୍ୟାସତ୍ୟ ନିର୍ଭର କରେ ।

ଭାମହଙ୍କ ପ୍ରକୃତ ସମୟ ଏ ପର୍ଯ୍ୟନ୍ତ ସ୍ଥିର ହୋଇ ପାରିନାହିଁ । ଯାହା ହୋଇଛି, ସେ ସମ୍ପର୍କରେ କେତେକ କଥା ପରବର୍ତ୍ତୀ ଅଳଂ-କାରିକ ଦଣ୍ଡୀଙ୍କର ସମୟ ନିରୂପଣ ବେଳେ କୁହାଯିବ । ତେବେ ସଂକ୍ଷେପରେ କହିବାକୁ ଗଲେ ସେ ଷଷ୍ଠ ବା ସପ୍ତମ ଶତାବ୍ଦୀରେ ଜୀବିତ ଥିଲେ ।

## ଦଣ୍ଡୀ

ପ୍ରେମଚନ୍ଦ୍ର ତର୍କବାଗୀଶଙ୍କ ଟୀକାସହ କଲିକତାରୁ ଓ ଅନ୍ୟ ଏକ ପୁନାରୁ ବାହାରିଥିବା ସଂସ୍କରଣରେ ଦଣ୍ଡୀଙ୍କ ବିଖ୍ୟାତ

ଅଳଂକାର ଗ୍ରନ୍ଥ କାବ୍ୟାଦର୍ଶ ତିନିଗୋଟି ପରିଚ୍ଛେଦରେ ବିଭକ୍ତ ହୋଇଅଛି । କିନ୍ତୁ ମାନ୍ଦ୍ରାଜରୁ ଅଧ୍ୟାପକ ରଙ୍ଗାଚାର୍ଯ୍ୟଙ୍କ ଯେଉଁ ସଂସ୍କରଣ ବାହାରିଛି, ତହିଁରେ ଅନ୍ୟମାନଙ୍କର ତୃତୀୟ ପରିଚ୍ଛେଦକୁ ଦୁଇ ଭାଗରେ ବିଭକ୍ତ କରାଯାଇ ସର୍ବମୋଟ ଚାରିଗୋଟି ପରିଚ୍ଛେଦ କରାଯାଇଛି । ତଳେ ଗ୍ରନ୍ଥାଲୋଚିତ ବିଷୟ ବସ୍ତୁର ଏକ ଅତି ସଂକ୍ଷିପ୍ତ ସୂଚୀମାନ ଦିଆ ଯାଇଛି ।

ପ୍ରଥମ ପରିଚ୍ଛେଦ—କାବ୍ୟଭେଦ, ଗଦ୍ୟ, ପଦ୍ୟ ଓ ମିଶ୍ର । ପୁଣି ସଂସ୍କୃତ, ପ୍ରାକୃତ, ଓ ଅପଭ୍ରଂଶ ଭେଦରେ କାବ୍ୟ ତିନିପ୍ରକାର । ରୀତି ଓ ଦଶଗୁଣର ବିସ୍ତାର—କାବ୍ୟର ହେତୁ, ପ୍ରତିଭା, ଶ୍ରୁତି ଓ ଅଭିଯୋଗ ।

ଦ୍ୱିତୀୟ ପରିଚ୍ଛେଦ—ଅଳଂକାରର ଲକ୍ଷଣ ଓ ୩୫ଗୋଟି ଅଳଂକାରର ଆଲୋଚନା ।

ତୃତୀୟ ପରିଚ୍ଛେଦ—ଯମକ, ଚିତ୍ରବନ୍ଧ, ଗୋମୂତ୍ରିକା, ସର୍ବତୋଭଦ୍ର—୧୬ ପ୍ରକାର ପ୍ରହେଳିକା ଓ କାବ୍ୟର ୧୦ ପ୍ରକାର ଦୋଷ ।

## ଦଣ୍ଡୀଙ୍କ ପରିଚୟ—

ଦଣ୍ଡୀଙ୍କ ଜୀବନୀ ଆମର ଆଦୌ ବିଦିତ ନୁହେ । ଲିଖିତ ଗ୍ରନ୍ଥରୁ ତ କିଛି ଜଣାଯାଏ ନାହିଁ, କିଂବଦନ୍ତୀ ମଧ୍ୟ ଏ ଦିଗରେ ଆମକୁ ସାହାଯ୍ୟ ହେବାଲାଗି ଆଦୌ ପ୍ରସ୍ତୁତ ନୁହେ । ଯାହାହେଉ, ଦଣ୍ଡୀଙ୍କ ରଚନା ବଡ଼ ସରସ । ସେ ଉଲ୍ଲେଖ କରିଥିବା ଗ୍ରନ୍ଥମାନଙ୍କର ନାମ ମଧ୍ୟରେ ଛନ୍ଦୋବିଚିତ, ବୃହତ୍-କଥା ଓ ସେତୁବନ୍ଧ ଅନ୍ୟତମ । କେତେଜଣ ଅନୁସନ୍ଧିତ୍ସୁ କହନ୍ତି, ଛନ୍ଦୋ-ବିଚିତ ଅନ୍ୟ କାହାରି ରଚନା ନୁହେ, ତାହା ଦଣ୍ଡୀଙ୍କ ରଚନା ମାତ୍ର । କିନ୍ତୁ ଏ ବିଷୟର ସିଦ୍ଧାନ୍ତ ଏ ପର୍ଯ୍ୟନ୍ତ ହୋଇ ପାରି ନାହିଁ । ଅନ୍ୟ-

ମାନଙ୍କ ମତରେ ଏହା ଛନ୍ଦ (ପଞ୍ଚମ ବେଦାଙ୍ଗ) ବିଷୟକ ଗ୍ରନ୍ଥ ଏବଂ ଏହାର ପ୍ରଣେତା ହେଉଛନ୍ତି ପିଙ୍ଗଳନାଗ । ଶାବରଭାଷ୍ୟ ଓ କୌଟିଲ୍ୟ ଅର୍ଥଶାସ୍ତ୍ରରେ ଛନ୍ଦୋବିଚିତି'ର ପ୍ରୟୋଗ ହୋଇଥିବାରୁ ଏହା ନିଃସନ୍ଦେହରେ ପ୍ରାଚୀନ ହୁଏ, ଗ୍ରନ୍ଥଟି ଦଣ୍ଡୀଙ୍କ ବହୁଶତ ବର୍ଷ ପୂର୍ବେ ରଚିତ ହୋଇଥିଲା । ବାସ୍ତବରେ ଏ ମତ ବିଶେଷ ଯୁକ୍ତିଯୁକ୍ତ ବୋଲି ମନେ ହୁଏ । ଏକଥା ନିଶ୍ଚୟ ଯେ, ପିଙ୍ଗଳନାଗ ତାହା ପ୍ରଣୟନ କରନ୍ତୁ ବା ନକରନ୍ତୁ କୌଟିଲ୍ୟ ପ୍ରଭୃତିଙ୍କ ବହୁ ପରବର୍ତ୍ତୀ ଦଣ୍ଡୀ ତାହାର ଲେଖକ ନୁହନ୍ତି । ଉଲ୍ଲିଖିତ ଅନ୍ୟାନ୍ୟ ନାମମଧ୍ୟରେ ଭରତ, ପତଞ୍ଜଳି, କପିଳ, ନ୍ୟାୟ, ହେତୁବିଦ୍ୟା ପ୍ରଭୃତି ଅନ୍ତର୍ଗତ ।

## ଦଣ୍ଡୀଙ୍କ ଅନ୍ୟ ଗ୍ରନ୍ଥ—

ଶାର୍ଙ୍ଗଧର ପଦ୍ଧତିରେ ରାଜଶେଖରଙ୍କ ଉଦ୍ଧୃତ ଏକ ଶ୍ଳୋକ ଦଣ୍ଡୀଙ୍କ ସମ୍ପର୍କରେ ଗୋଟିଏ ସମସ୍ୟା ସୃଷ୍ଟି କରି ଦେଇଛି । ଲେଖା ଅଛି,—'ତ୍ରୟୋଦଣ୍ଡି ପ୍ରବନ୍ଧାଶ୍ଚ ତ୍ରିଷୁ ଲୋକେଷୁ ବିଶ୍ରୁତାଃ" ଅର୍ଥାତ ଦଣ୍ଡି ପ୍ରଣୀତ ତିନୋଟିଗ୍ରନ୍ଥ ତିନିଲୋକରେ ବିଶ୍ରୁତ । ଏଥିରୁ ଦଣ୍ଡୀଙ୍କ ରଚନା ସେ ସମୟରେ କେତେ ବ୍ୟାପକଭାବେ ସମାଦୃତ ହେଉଥିଲା, ସ୍ପଷ୍ଟ ଜଣାଯାଏ । ପଦଲାଳିତ୍ୟ ହେତୁ ସମଗ୍ର ସଂସ୍କୃତ ସାହିତ୍ୟରେ ଅଖଣ୍ଡ ପ୍ରତିଷ୍ଠା ଲାଭ କରିଥିବା ଦଶକୁମାର ଚରିତ ଦଣ୍ଡୀଙ୍କର ଦ୍ୱିତୀୟ ଗ୍ରନ୍ଥ । କିନ୍ତୁ ତୃତୀୟ ଗ୍ରନ୍ଥର ନାମ ପର୍ଯ୍ୟନ୍ତ କେହୁ ବର୍ତ୍ତମାନ ଜାଣିପାରୁ ନାହାନ୍ତି । କେତେକ ପଣ୍ଡିତ କହନ୍ତି, ବୋଧହୁଏ 'କଳା-ପରିଚ୍ଛେଦ' ତାଙ୍କର ତୃତୀୟ ରଚନା । ମାତ୍ର ଏ ଗ୍ରନ୍ଥର ସତ୍ତା ଥିବା ମଧ୍ୟ ଜଣାଯାଇ ନାହିଁ । ଦଶକୁମାର ଚରିତର ଲେଖକ ଦଣ୍ଡୀ ନୁହନ୍ତି—ଏକଥା ପ୍ରମାଣ କରିବା ପାଇଁ ତ୍ରିବେଦୀ ମହାଶୟ ଓ ଅନ୍ୟ କେତେକଜଣ ପଣ୍ଡିତ ଯେଉଁ ଯୁକ୍ତିମାନ ଉପସ୍ଥାପିତ କରିଛନ୍ତି, ସେ ସବୁକର ସଂକ୍ଷେପ ସୂଚନା ତଳେ ଦିଆଗଲା :—

(ଖ) ଦଣ୍ଡୀ ଏକପକ୍ଷରେ ଯେପରି ଜଣେ ବିଶିଷ୍ଟ ଅଲଂକାରିକ, ଅନ୍ୟପକ୍ଷରେ ସେହିପରି ଜଣେ ନିପୁଣ ସମାଲୋଚକ । ତାଙ୍କ ମତରେ କାବ୍ୟରେ କୌଣସି ପ୍ରକାର ତ୍ରୁଟି ରହିବା ଉଚିତ ନୁହେଁ । ଏପରିକି ଗୋଟିଏ ଅତି ସାଧାରଣ ବା ନଗଣ୍ୟ ଦୋଷ ଦ୍ୱାରା ମଧ୍ୟ କାବ୍ୟର ସୌନ୍ଦର୍ଯ୍ୟ ବିନଷ୍ଟ ହୁଏ ବୋଲି ତାଙ୍କର ମତ । କିନ୍ତୁ ଦଶ-କୁମାର ଚରିତ ସେହିପରି ଜଣେ କଟୁ ସମାଲୋଚକର ଲେଖନୀ ନିଃସୃତ ବୋଲି ମନେହୁଏ ନାହିଁ । ଦଣ୍ଡୀ ନିଜେ ଦଶକୁମାର ଚରିତ ପ୍ରଣୟନ କରିଥିଲେ ତହିଁରେ ଯୌନ ସମ୍ପର୍କୀୟ ମାର୍ଜିତ ରୁଚିର ବିରୋଧୀ ବହୁକଥା ଲେଖି ନ ଥାନ୍ତେ ।

(ଗ) ଜଣେ ଲେଖକର ଲେଖନ ଭଙ୍ଗୀ ପ୍ରାୟ ସର୍ବଦା ସମାନ ଥାଏ । କାବ୍ୟାଦର୍ଶ ଓ ଦଶକୁମାର ଚରିତ—ଏ ଦୁଇଗ୍ରନ୍ଥର ବାକ୍ୟ ରଚନା ଭଙ୍ଗୀରେ ଆକାଶ ପାତାଳ ପ୍ରଭେଦ ପରିଲକ୍ଷିତ ହୁଏ । କାବ୍ୟାଦର୍ଶର ବାକ୍ୟ ପ୍ରାୟତଃ ଅତି ଛୋଟ ଛୋଟ ସମସ୍ତ ଦେଖୁଛନ୍ତି । ଅନ୍ୟ ଗ୍ରନ୍ଥଟିରେ କିନ୍ତୁ ଦୀର୍ଘ ସମାସ ପରଂପରା ସାଧାରଣ ପାଠକର ଚମକପ୍ରଦ ହୋଇଥାନ୍ତା ଯେବେ ତହିଁରେ ପଦଲାଳିତ୍ୟ ଅଳ୍ପ ପରିମାଣରେ ସୃଷ୍ଟି କରିଥାନ୍ତା । ତେଣୁ ଏ ଉଭୟ ଗ୍ରନ୍ଥର ପ୍ରଣେତା ଜଣେ ହେବା ସମ୍ଭବ ନୁହେଁ ।

ଏ ଯୁକ୍ତି ଦୁଇଟିର ଟିକିଏ ସୂକ୍ଷ୍ମ ବିଚାର କଲେ ଦେଖାଯିବ ଏହାଦ୍ୱାରା ଦଣ୍ଡୀଙ୍କୁ ଉଭୟ ଗ୍ରନ୍ଥର ପ୍ରଣେତା ରୂପେ ଗ୍ରହଣ କରି-ବାରେ କୌଣସି ସନ୍ଦେହର କାରଣ ନାହିଁ । ସମାଲୋଚନାରେ କୁହାଯାଇ ପାରେ :—

[କ] ଯେ କୌଣସି ଦେଶରେ ବା କାଳରେ, ଯେ କୌଣସି ଲେଖକର କହିବା ଓ କରିବା ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଦେଖାଯାଏ । କୌଣସି ଆଦର୍ଶକୁ ଉପରେ ଗୁରୁତ୍ୱ ଦେଇ ଯୁକ୍ତି କରି-ବାର ଅର୍ଥ ଏହା ନୁହେ ଯେ ଜଣେ ଯାହା କରିବା ଉଚିତ ବୋଲି କହେ, ତାହା ସେ କରେ ବା କରିବା ସବୁକ୍ଷେତ୍ରରେ ତା ପକ୍ଷେ ସମ୍ଭବ ହୁଏ । ଏହା ସମସ୍ତେ ସ୍ୱୀକାର କରିବେ, ପ୍ରତ୍ୟେକ କବି କାବ୍ୟରେ ଲାଳିତ୍ୟ ଓ ମାଧୁର୍ଯ୍ୟ ରହିବା ସର୍ବାଦୌ ଆବଶ୍ୟକ ବୋଲି କହନ୍ତି, କହୁଥିଲେ ଏବଂ କହିବେ ଓ ଲାଳିତ୍ୟ-ଗ୍ଳାନିକର କୌଣସି ବିଷୟର ସମାବେଶ ତହିଁରେ ଉଚିତ ନୁହେ ବୋଲି ଯୁକ୍ତି କରିବେ; କିନ୍ତୁ କେତେ ଜଣ କବି ବାସ୍ତବରେ ଏ ଆଦର୍ଶକୁ ଅକ୍ଷରେ ଅକ୍ଷରେ ଅଭ୍ରାନ୍ତଭାବେ କାର୍ଯ୍ୟରେ ପରିଣତ କରିଛନ୍ତି । ତେବେ ଏହି ନ୍ୟାୟରେ ନିର୍ଦ୍ଦୋଷ କାବ୍ୟର ଉପାସକ ଦଣ୍ଡୀ ଯେ ସାଧାରଣ ରୁଚିଯୁକ୍ତ ଦଶକୁମାର ଚରିତ ଗ୍ରନ୍ଥ ରଚନା କରି ନ ଥିବେ, କହିବା ଅମୂଳକ ।

[ଖ] ତା ପରେ କାବ୍ୟାଦର୍ଶ ଓ ଦଶକୁମାର ଚରିତ ଦୁଇଟି ଭିନ୍ନ ଭିନ୍ନ ବିଭାଗୀୟ ଗ୍ରନ୍ଥ । ଗୋଟିଏ କାବ୍ୟତତ୍ତ୍ୱର ବିଚାର, ଅନ୍ୟଟି କାବ୍ୟ । କାବ୍ୟାଦର୍ଶ ବଡ଼ ଉଚ୍ଚ ଶ୍ରେଣୀ ପ୍ରସୂତ । ତେଣୁ ଯୁଗ ଯୁଗ ଧରି ଖ୍ୟାତିଲାଭ କରିଥିବା ଦଣ୍ଡୀଙ୍କର ଲେଖକତ୍ୱ ଉପରେ ସନ୍ଦେହ ନ କରି ବରଂ ଏହା କହିବା ଅଧିକ ସଙ୍ଗତ ହେବ ଯେ ଯୌବନା-ବସ୍ଥାରେ କାବ୍ୟ ଖଣ୍ଡିକ ଲେଖା ଯାଇଥିଲା ଏବଂ ପ୍ରୌଢ଼ାବସ୍ଥାରେ କାବ୍ୟାଦର୍ଶ ପ୍ରଣୀତ ହୋଇଥିଲା ।

[ଗ] ଏହା ଛଡ଼ା କାବ୍ୟରେ ଯେଉଁ ଗ୍ରାମ୍ୟ ରୁଚି ନିରାକରଣ କଥା ଦଣ୍ଡୀ କହିଛନ୍ତି, ତାହାର ଅର୍ଥ ଭିନ୍ନ ପ୍ରକାର, ଅର୍ଥାତ୍

ଦ୍ୱିବେଦୀ ପ୍ରମୁଖ ସମାଲୋଚକମାନେ ଯେ ପ୍ରକାରେ ବୁଝିଛନ୍ତି ତାହା ଦଣ୍ଡୀଙ୍କ ଉଦ୍ଦିଷ୍ଟ ମତବାଦ ଠାରୁ ପୃଥକ୍ । ଦଣ୍ଡୀ କାବ୍ୟର ଆତ୍ମା ବକ୍ରୋକ୍ତି ବୋଲି ସ୍ଥିର କରିଥିବାରୁ, ତାଙ୍କ ମତରେ ସତ୍-କାବ୍ୟରେ ଉକ୍ତି ବିଶେଷତ୍ୱ ଓତପ୍ରୋତଭାବେ ବିଜଡ଼ିତ ରହିବା ଏକାନ୍ତ ଆବଶ୍ୟକ । ତା ନ ହେଲେ ତାଙ୍କ ମତରେ ସାଧାରଣ କଥୋପକଥନ କାଳରେ ବ୍ୟବହୃତ ଭାଷା ବା ଅଭିବ୍ୟକ୍ତି ଭଙ୍ଗୀ କଦାପି ସତ୍ କାବ୍ୟରେ ସ୍ଥାନ ଅଧିକାର କରି ପାରିବ ନାହିଁ । ପ୍ରକାରାନ୍ତରରେ କହିବାକୁ ଗଲେ, ବକ୍ରୋକ୍ତିର ଉପାଦେୟତା ସ୍ୱୀକାର କରା ନ ଗଲେ, ଗ୍ରାମ୍ୟ ଲୋକର ଚମତ୍କାରିତା-ବିହୀନ ବାକ୍ୟାବଳୀ ମଧ୍ୟ କାବ୍ୟ ନାମରେ ପରିଗଣିତ ହେବ । ତେଣୁ କେବଳ ମାର୍ଜିତ ରୁଚି ନୁହେଁ, କବି ପ୍ରତିଭା ଜନିତ ମାର୍ଜିତ ଗୁଣ କାବ୍ୟର "ଅଗ୍ରାମ୍ୟ ରୁଚି" ଦ୍ୱାରା ଲକ୍ଷିତ ହୋଇଛି ।

ଦ୍ୱିତୀୟ ଯୁକ୍ତିର ଆଲୋଚନା କଲେ ମଧ୍ୟ ଦେଖାଯିବ, ଦ୍ୱିବେଦୀ ପ୍ରଭୃତିଙ୍କ ସିଦ୍ଧାନ୍ତ ଭିତ୍ତିମୂଳକ ନୁହେ :—

[ଖ] କାବ୍ୟାଦର୍ଶରେ ଦଣ୍ଡୀଙ୍କର ସରସ ଲେଖା ଓ ଅଦୀର୍ଘ ସମାସଯୁକ୍ତ ବାକ୍ୟାବଳୀ ଏବଂ ଅତି ଦୀର୍ଘ ସମାସଯୁକ୍ତ ଦଶକୁମାର ଚରିତ ମଧ୍ୟରେ ଯେଉଁ ପ୍ରଭେଦ ଦେଖାଯାଏ, ତାହାଦ୍ୱାରା ସମାଲୋଚକମାନଙ୍କ ସିଦ୍ଧାନ୍ତର ଆଂଶିକ ପୁଷ୍ଟି ମଧ୍ୟ ସାଧିତ ହେଉ ନାହିଁ । ଦଣ୍ଡୀ ନିଜେ ଲେଖିଛନ୍ତି, ପଦ୍ୟରେ ଦୀର୍ଘ ସମାସ ରହିବା ଉଚିତ ନୁହେଁ, କିନ୍ତୁ ଗଦ୍ୟ ସମ୍ବନ୍ଧେ ତାଙ୍କର ସେପରି କୌଣସି ନିର୍ଦ୍ଦେଶ ନାହିଁ । ଯେବେ କାବ୍ୟାଦର୍ଶ ପଢିବା ଦ୍ୱାରା କବିଙ୍କ ସରସ ଲେଖକ ଥିବା ଅନୁମାନ କରାଯାଏ, ତେବେ ସରସତା ଗୁଣ, ଦଶକୁମାର ଚରିତ କ୍ଷେତ୍ରେ ମଧ୍ୟ ଉକ୍ତିଟିର ପରିମାପକ

ହେବା ଉଚିତ । ଏ ଦିଗରୁ ଦେଖିଲେ ଦଣ୍ଡୀଙ୍କର ଦଶକୁମାର ଚରିତର ପ୍ରନେତୃତ୍ୱ ଉପରେ ସନ୍ଦେହ କରିବାର କୌଣସି କାରଣ ନାହିଁ ।

୨ । "ଦଣ୍ଡିନଃ ପଦ ଲାଳିତ୍ୟମ୍" ଯେପରି କାବ୍ୟ ଗ୍ରନ୍ଥରେ ବେଦମନ୍ତ୍ର ପରି ସମ୍ମାନିତ କାବ୍ୟାଦର୍ଶ ଅଳଂକାର ଗ୍ରନ୍ଥ ହେବା ସତ୍ତ୍ୱେ ତାର ସରସତା ସେହିପରି ସାର୍ବଜନୀନ । ତେଣୁ ବିନା ଗୁରୁତର ଓ ବଳିଷ୍ଠ ପ୍ରମାଣରେ ଦଶକୁମାର ଚରିତଠାରୁ ଦଣ୍ଡୀଙ୍କୁ ବିଚ୍ଛିନ୍ନ କରିବା ଅନୁଚିତ ।

## ଦଣ୍ଡୀ ଓ ଭାମହଙ୍କ ସମୟ ନିରୂପଣ:—

ଦଣ୍ଡୀ ଓ ଭାମହଙ୍କ ସମୟ ନିରୂପଣ ସମଗ୍ର ଅଳଂକାର ସାହିତ୍ୟର ଇତିହାସରେ ଏକ ବିରାଟ କୌତୂହଳ ପୂର୍ଣ୍ଣ ଘଟଣା । ଉଭୟେ ସମସାମୟିକ ନ ହେଲେ ମଧ୍ୟ ବିଶେଷ ଦୂରବର୍ତ୍ତୀ ନୁହନ୍ତି । ହୁଏତ ସେମାନଙ୍କ ସମୟର ପାର୍ଥକ୍ୟ ୫୦ ବର୍ଷରୁ ବେଶୀ ନୁହେ । ଉଭୟଙ୍କ ଲେଖାରେ ବହୁ ପରିମାଣରେ ସମତା ବିଦ୍ୟମାନ, ଅର୍ଥାତ୍, ଏ ଉଭୟଙ୍କ ମଧ୍ୟରୁ କିଏ କାହାର ଅନୁକରଣ ବା ଅନୁସରଣ କରିଛି, ଜାଣିବାର ବର୍ତ୍ତମାନ ଉପାୟ ନାହିଁ । ଦଣ୍ଡୀଙ୍କ ସମୟ ଭାମହଙ୍କ ସମୟର ପୂର୍ବବର୍ତ୍ତୀ ନା ପରବର୍ତ୍ତୀ ଏ କଥା ଦୀର୍ଘ କୋଡ଼ିଏ ବର୍ଷକାଳ ଏକ ପ୍ରଧାନ ବିବାଦାତ୍ମକ ବିଷୟ ରୂପେ ଅଲୋଚିତ ହୋଇ ଅସିଛି । ଅଧ୍ୟାପକ ପାଠକ 'କବିରାଜ—ମାର୍ଗ' ଭୂମିକାରେ ଅଧ୍ୟାପକ ତ୍ରିବେଦୀ 'ପ୍ରତାପ ରୁଦ୍ରୀୟ'ର ଭୂମିକାରେ ଓ ଅଧ୍ୟାପକ ରଙ୍ଗାଚାର୍ଯ୍ୟ କାବ୍ୟାଦର୍ଶର ଭୂମିକାରେ ଭାମହ ଦଣ୍ଡୀଙ୍କର ପୂର୍ବବର୍ତ୍ତୀ ବୋଲି ସ୍ଥିର କରିଛନ୍ତି । କିନ୍ତୁ ଅଧ୍ୟାପକ ନରସିଂହ ଅୟଙ୍ଗାର ପ୍ରମୁଖ କେତେଜଣ ପଣ୍ଡିତ ଉପର୍ଯ୍ୟୁକ୍ତ

ସିଦ୍ଧାନ୍ତର ବିପରୀତ ମତ ପୋଷଣ କରିଛନ୍ତି । ଉକ୍ତ ଲିଖିତ ପଣ୍ଡିତମାନଙ୍କର ଯୁକ୍ତିତର୍କରେ ଗଭୀର ଅନୁସନ୍ଧିତ୍ସା, ପ୍ରଗାଢ଼ ସତ୍ୟ ପ୍ରେମିକତା ଓ ବିଶାଳ ପାଣ୍ଡିତ୍ୟ ଦେଖାଯାଏ । କେବଳ ଏ ସମ୍ପର୍କୀୟ ସମସ୍ତ ଖଣ୍ଡନମଣ୍ଡନାତ୍ମକ ଯୁକ୍ତିଗୁଡ଼ିକର ଅବତାରଣା କଲେ ଏକ ଗ୍ରନ୍ଥ ହେବ । ଶେଷରେ ଏତିକି ଉଲ୍ଲେଖ୍ୟ ଯେ କାଣେ ପ୍ରମୁଖ କେତେକ ପଣ୍ଡିତ ଉଭୟପକ୍ଷର ଯୁକ୍ତିଗୁଡ଼ିକୁ ତନ୍ନ ତନ୍ନ ଆଲୋଚନା କରି କହନ୍ତି, ଯଦ୍ୟପି କିଏ କାହାର ଆଗ କହି ହେବ ନାହିଁ, ତଥାପି ଏ ଦୁହେଁ ଯାକ ଲେଖକ ଖ୍ରୀ:—୫୦୦—୭୫୦ ମଧ୍ୟରେ ଜୀବିତ ଥିବା ନିଃସନ୍ଦେହ ।

## କାବ୍ୟାଦର୍ଶର ଟୀକା—

କାବ୍ୟାଦର୍ଶ ମଧ୍ୟ କାବ୍ୟପ୍ରକାଶ ପରି ଏକ ବିଖ୍ୟାତ ଗ୍ରନ୍ଥ । ଏହା ଉପରେ ନିମ୍ନଲିଖିତ ପଣ୍ଡିତମାନେ ଟୀକା ଲେଖି ଯାଇଛନ୍ତି । 'ତରୁଣ ବାଚସ୍ପତି, ତ୍ରିଭୁବନଚନ୍ଦ୍ର, ଭଗୀରଥ, ବାଦଜଂଘଲ, ବିଜୟାନନ୍ଦ, କୃଷ୍ଣକିଂକର ( ଟୀକାନାମ—କାବ୍ୟତତ୍ତ୍ୱ—ବିବେକ କୌମୁଦୀ ) ହରିନାଥ ( କାବ୍ୟାଦର୍ଶ ଚନ୍ଦ୍ରିକା ) ହରିନାଥ ମହୋପାଧ୍ୟାୟ ( ମାର୍ଜନ ) ନରସିଂହ ସୂରି ( ମୁକ୍ତାବଳୀ ) ରଘୁନାଥ (ରସିକରଞ୍ଜନୀ, ମଲ୍ଲିନାଥ (ବୈମଲ୍ୟ ବିଧାୟିନୀ) । ଶୁଦ୍ଧାନୁ ପାଳନୀ ତଥା ହୃଦୟଙ୍ଗମା ନାମକ ଅନ୍ୟ ଦୁଇଟି ଟୀକା ଥିବା ମଧ୍ୟ ଜଣା ଯାଇଛି ।

### ଉଦ୍‌ଭଟ

"ଅଳଂକାର ସାର ସଂଗ୍ରହ" ହେଉଛି ଉଦ୍‌ଭଟ ପ୍ରଣୀତ ବିଖ୍ୟାତ ଅଳଂକାର ଗ୍ରନ୍ଥ । ପ୍ରତିହାରେନ୍ଦୁରାଜଙ୍କ ଲଘୁ ବୃତ୍ତି ନାମ୍ନୀ

ଟୀକା ସହ ଏହା ପ୍ରକାଶ ପାଇଛି । ଗ୍ରନ୍ଥଟି ଛଅ ଗୋଟି ବର୍ଗରେ ବିଭକ୍ତ । ଆଲୋଚ୍ୟ ବିଷୟର ଏକ ଅତି ସ୍ଥୂଳ ବିବରଣୀ ତଳେ ଦିଆଗଲା:—

୧ମ ବର୍ଗ—ପୁନରୁକ୍ତ ବଦାଭାସ, ଅନୁପ୍ରାସ, ଛେକାନୁପ୍ରାସ, ଲାଟାନୁପ୍ରାସ, ରୂପକ, ଉପମା, ଦୀପକ, ପ୍ରତିବସ୍ତୂପମା ।

୨ୟ ବର୍ଗ—ଆକ୍ଷେପ, ଅର୍ଥାନ୍ତରନ୍ୟାସ, ବ୍ୟତିରେକ, ବିଭାବନା, ସମାସୋକ୍ତି, ଅତିଶୟୋକ୍ତି ।

୩ୟ ବର୍ଗ—ଯଥାସଂଖ୍ୟ, ଉତ୍ପ୍ରେକ୍ଷା, ସ୍ୱଭାବୋକ୍ତି ।

୪ର୍ଥ ବର୍ଗ—ପ୍ରେୟଃ, ରସବତ୍, ଉର୍ଜସ୍ୱୀ, ପର୍ଯ୍ୟାୟୋକ୍ତି, ଉଦାତ୍ତ, ଶ୍ଳିଷ୍ଟ ।

୫ମ ଓ ଷଷ୍ଠ—ଅପହ୍ନୁତି, ବିଶେଷୋକ୍ତି, ବିରୋଧ, ତୁଲ୍ୟଯୋଗ୍ୟତା, ଅପ୍ରସ୍ତୁତ ପ୍ରଶଂସା, ବ୍ୟାଜସ୍ତୁତି ନିଦର୍ଶନା, ଉପମେୟୋପମା, ସହୋକ୍ତି, ସଙ୍କର, ପରିବୃତ୍ତି, ଅନନ୍ୱୟ, ସସନ୍ଦେହ, ସଂସୃଷ୍ଟି ଭାବିକ, କାବ୍ୟଲିଙ୍ଗ, ଦୃଷ୍ଟାନ୍ତ ପ୍ରଭୃତି ।

## ଭାମହ ଓ ଉଦ୍‌ଭଟ—

ନିମ୍ନଲିଖିତ ଅଳଂକାର ଗୁଡ଼ିକର ଲକ୍ଷଣ ଭାମହ ଯେପରି ଲେଖିଛନ୍ତି, ଉଦ୍‌ଭଟ ମଧ୍ୟ ସେହିପରି ଲେଖିଛନ୍ତି:—ଆକ୍ଷେପ, ବିଭାବନା, ଅତିଶୟୋକ୍ତି, ଯଥାସଂଖ୍ୟ, ପର୍ଯ୍ୟାୟୋକ୍ତି, ଅପହ୍ନୁତି, ବିରୋଧ, ଅପ୍ରସ୍ତୁତ ପ୍ରଶଂସା, ସହୋକ୍ତି, ସସନ୍ଦେହ ଓ ଅନନ୍ୱୟ । ଲକ୍ଷଣଗତ ସାଦୃଶ୍ୟର କାରଣ ଜାଣିବାକୁ ହେଲେ ଟୀକାକାର ପ୍ରତିହାରେନ୍ଦୁରାଜଙ୍କର ସାହାଯ୍ୟ ନେବାକୁ ହେବ । ସେ ଲେଖିଛନ୍ତି

"ଭାମହ ବିବରଣ" ଗ୍ରନ୍ଥରେ ଉଦ୍ଭଟୋଦ୍ଭଟ ଲେଖିଛନ୍ତି, ଇତ୍ୟାଦି ।

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ଭାମହଙ୍କ କାବ୍ୟାଳଙ୍କାର ଉପରେ ଉଦ୍ଭଟ ଟୀକା ଲେଖିଥିଲେ । ପୁଣି ଭାମହ ନିଜ ଗ୍ରନ୍ଥର ୨ୟ ଓ ୩ୟ ପରିଚ୍ଛେଦରେ ୩୯ଟି ଅଳଂକାରମାନଙ୍କର ଆଲୋଚନା କରିଛନ୍ତି, ଉଦ୍ଭଟଙ୍କ "ସାରସଂଗ୍ରହ" ବୋଧହୁଏ ସେ ସବୁର ଏକ ପରିବର୍ଦ୍ଧିତ ଓ ପରିମାର୍ଜିତ ସଂସ୍କରଣ । କିନ୍ତୁ ଏକଥା ସର୍ବଥା ସ୍ୱୀକାର କରିବାକୁ ହେବ ଯେ "ସାରସଂଗ୍ରହ" ପ୍ରଣୟନ ବେଳେ ଉଦ୍ଭଟ ଅନ୍ୟାନ୍ୟ ଲବ୍ଧପ୍ରତିଷ୍ଠ ଗ୍ରନ୍ଥମାନଙ୍କର ସାହାଯ୍ୟ ନେଇଥିଲେ । ଧ୍ୱନ୍ୟାଲୋକର ଲୋଚନ ଟୀକାରେ ଉଦ୍ଭଟୋଦ୍ଭଟ ଭାମହଙ୍କ ଗ୍ରନ୍ଥର ଟୀକା ଲେଖିଥିବା କଥା ସୂଚିତ ହୋଇଛି ।

**କାବ୍ୟାତ୍ମବାଦ –**

ଅଳଂକାର ଯେ କାବ୍ୟର ଆତ୍ମା, ଏହା ଉଦ୍ଭଟ କେବଳ ସ୍ୱୀକାର କରି ନାହାନ୍ତି, ପ୍ରତିଷ୍ଠା ମଧ୍ୟ କରି ଯାଇଛନ୍ତି । ଅବଶ୍ୟ ଏ କାବ୍ୟାତ୍ମବାଦର ସେ ଜନ୍ମଦାତା ନୁହନ୍ତି । ଭାମହ ବାସ୍ତବରେ ଏ ମତବାଦର ସ୍ରଷ୍ଟା । କିନ୍ତୁ ଭାମହଙ୍କ ବୀଜ ଉଦ୍ଭଟଙ୍କ ଷୋଳ ପାଣ୍ଡିତ୍ୟ-ବାରି ସିଞ୍ଚନ ଦ୍ୱାରା ଅଙ୍କୁରିତ ଓ ପରିପୁଷ୍ଟ ହୋଇ ଅଳ ପ୍ରକାଣ୍ଡ ବଟ ବୃକ୍ଷପରି ଅଳଂକାରରାଜ୍ୟରେ ଦଣ୍ଡାୟମାନ ରହିଛି । Col. Jacob କିନ୍ତୁ ଏ ମତବାଦର ସାରବତ୍ତା ସ୍ୱୀକାର କରି ନାହାନ୍ତି । ପ୍ରତିହାରେନ୍ଦୁରାଜଙ୍କ ଉଦ୍ଧୃତ କୌଣସି ଏକ ଶ୍ଳୋକ ଦେଖି ସେ କହନ୍ତି, ଉଦ୍ଭଟ ରସାତ୍ମବାଦର ମଧ୍ୟ ସମର୍ଥକ ଥିଲେ । ମାତ୍ର ଅନ୍ୟ ପଣ୍ଡିତମାନେ ଜେକୋବଙ୍କ

ମତର ଖଣ୍ଡନ ସମାଲୋଚନା କରିଛନ୍ତି । ସମାଲୋଚନାରେ ଉପସ୍ଥାପିତ ଯୁକ୍ତିମାନଙ୍କର ସାରମର୍ମ ଏହି ଯେ:—

(କ) ପ୍ରତିହାରେନ୍ଦୁରାଜଙ୍କ ଉଦ୍ଧୃତ ଯେଉଁ ବାକ୍ୟ ଉପରେ ଜେକୋବ୍ ନିର୍ଭର କରିଛନ୍ତି ତାହା ବାସ୍ତବରେ ଉଦ୍‌ଭଟଙ୍କର ନୁହେ । ସେ ଅନ୍ୟ କୌଣସି ଲେଖକର ବାକ୍ୟ ଉଦ୍ଧାର କରି "ତଦାହୁଃ" ଲେଖିଛନ୍ତି ।

(ଖ) ପୁଣି ଟୀକାକାର ଯେଉଁ ବାକ୍ୟ ଉଦ୍ଧାର କରିଛନ୍ତି ତାହା "କାବ୍ୟଲିଙ୍ଗ" ଅଳଂକାରର ଆଲୋଚନା ପରେ ପରେ ହୋଇଛି । ଯେବେ ଜେକୋବ୍‌ଙ୍କ କଥା ଠିକ୍ ବୋଲି ଧରିଯାଏ, ତେବେ ଉଦ୍‌ଭଟଙ୍କ କ୍ରମ ଭଙ୍ଗ ହେବ । ଉଦ୍‌ଭଟଙ୍କ କ୍ରମ ଅନୁସାରେ ବିବେଚନା କଲେ କାବ୍ୟଲିଙ୍ଗ ଅଳଂକାର ପରେ ତାର ଉଦାହରଣ ରହିବାର କଥା । କିନ୍ତୁ ଜେକୋବ୍‌ଙ୍କ ଲକ୍ଷିତ ଶ୍ଲୋକ କାବ୍ୟଲିଙ୍ଗ ଓ ତାର ଉଦାହରଣ ମଧ୍ୟରେ ଲକ୍ଷିତ । ତେଣୁ ବିଗ୍ରହ ପ୍ରସଙ୍ଗରେ ଟୀକାକାର ଅନ୍ୟ କୌଣସି ଲେଖକର ଲେଖା ଉଦ୍ଧାର କରିଛନ୍ତି ।

(ଗ) ଏହାଛଡ଼ା ରୁଯ୍ୟକ ପ୍ରଣୀତ ଅଳଂକାର ସର୍ବସ୍ୱରେ ସ୍ପଷ୍ଟ ଲେଖାଅଛି, ଉଦ୍‌ଭଟାଦମାନେ "ଅଲଂକାର ଏବ କାବ୍ୟେ ପ୍ରଧାନମିତି" ଅର୍ଥାତ୍ କାବ୍ୟରେ ଅଳଂକାର ପ୍ରଧାନ ବୋଲି ସ୍ଥିର କରିଛନ୍ତି । ରୁଯ୍ୟକ ମଧ୍ୟ ବୃତ୍ତି ନ ଥିଲେ କହିବା ଅସୁନ୍ଦର । ତେଣୁ ଜେକୋବଙ୍କ ସନ୍ଦେହ ଅମୂଳକ ।

## ସମୟ ନିରୂପଣ—

ଉଦ୍‌ଭଟଙ୍କ ସମୟ ନିରୂପଣ ସହଜରେ କରିଯାଇ ପାରେ । ରାଜତରଙ୍ଗିଣୀରେ ଲେଖାଅଛି:—ବିଦ୍ୱାନ୍ ଦୀନାରଲକ୍ଷେଣ ପ୍ରତ୍ୟହଂ କୃତ ବେତନଃ, ଭୂମି

ଭଟ୍ଟିଃ, ସଭାପତିଃ” । ଏହା କାଶ୍ମୀର ରାଜା ଜୟାପୀଡ଼ଙ୍କ ସମୟର କଥା । ଜୟାପୀଡ଼ ଖ୍ରୀ: ୭୭୯-୮୧୩ ପର୍ଯ୍ୟନ୍ତ ଶାସନ କରିଥିଲେ । ଅତଏବ ଏହା ନିଃସନ୍ଦେହ ଯେ 'ଉଦ୍‌ଭଟ ଅଷ୍ଟମ ଶତାବ୍ଦୀର ଶେଷାର୍ଦ୍ଧର ଲୋକ । ନବମ ଶତାବ୍ଦୀରେ ଲିଖିତ ଧ୍ୱନ୍ୟାଲୋକରେ ଉକ୍ତ ଗ୍ରନ୍ଥର ସୂଚନା ବହୁଧା ରହିଛି ।

## ଉଦ୍‌ଭଟଙ୍କ ଉଲ୍ଲିଖିତ କବି ଓ କାବ୍ୟ

ପ୍ରତିହାରେନ୍ଦୁରାଜ ଅଳଂକାର ସାର ସଂଗ୍ରହର ଯେଉଁ ଲଘୁବୃତ୍ତି ଟୀକା ଲେଖିଛନ୍ତି, ତହିଁରେ ତାଙ୍କର ଗଭୀର ଅଳଂକାରିକତା ପ୍ରକଟିତ ହୋଇଛି । ମୀମାଂସା, ବ୍ୟାକରଣ, ତର୍କ ଶାସ୍ତ୍ର ଓ ସାହିତ୍ୟରେ ବ୍ୟୁତ୍ପନ୍ନ ପଣ୍ଡିତ ମୁକୁଳ ତାଙ୍କର ଗୁରୁ । ସେ ନିଜେ କୌଙ୍କଣ ବା କୋଙ୍କଣ (Kon Kon dist) ଅଧିବାସୀ ବୋଲି ଲେଖିଛନ୍ତି । ଲଘୁବୃତ୍ତିରେ ନିମ୍ନଲିଖିତ ଗ୍ରନ୍ଥ ବା ଗ୍ରନ୍ଥକାରଙ୍କ ନାମୋଲ୍ଲେଖ ଦେଖାଯାଏ —କାତ୍ୟାୟନ, ଦଣ୍ଡୀ, ଭାମହ, ଭାମହ- ବିବରଣ, ବାମନ, ଭରତ, ଉଦ୍‌ଭଟ ଓ ଧ୍ୱନ୍ୟାଲୋକ । ପଣ୍ଡିତମାନେ ନାନା ପ୍ରମାଣ ଦ୍ୱାରା ସ୍ଥିର କରିଛନ୍ତି, ମୁକୁଳ ନବମ ଶତାବ୍ଦୀର ପ୍ରଥମାର୍ଦ୍ଧର ଲୋକ । ତେଣୁ ତାଙ୍କର ଶିଷ୍ୟ ନବମ ଶତାବ୍ଦୀର ଦ୍ୱିତୀୟ ଅର୍ଦ୍ଧରେ ଜୀବିତ ଥିଲେ । ଲଘୁବୃତ୍ତି ଛଡ଼ା ରାଜାନକ ତିଳକ ଲିଖିତ 'ଉଦ୍‌ଭଟ ବିବେକ' ନାମକ ଅନ୍ୟ ଏକ ଟୀକା ମଧ୍ୟ ଅଳଂକାର ସାରସଂଗ୍ରହ ଉପରେ ଲେଖା ଯାଇଥିଲା ।

## ଦ୍ୱିତୀୟ କୁମାର ସମ୍ଭବ—

କୁମାର-ସମ୍ଭବ ମହାକବି କାଳିଦାସଙ୍କର ବିଖ୍ୟାତ କାବ୍ୟଗ୍ରନ୍ଥ । ବର୍ତ୍ତମାନ ଅନୁସନ୍ଧାନରୁ ଜଣାଯାଉଛି, କାଳିଦାସଙ୍କ

ଅନୁକରଣରେ ଅଳେଚିତ ଅଳଂକାରିକ ଉଦ୍‌ଭଟ ମଧ୍ୟ କୁମାରସମ୍ଭବ ନାମରେ ଖଣ୍ଡ ଏ କାବ୍ୟ ରଚନା କରିଥିଲେ । ଏ ଦୁଇଗ୍ରନ୍ଥ ତୁଳନା କରି ଦେଖାଯାଇଛି, ବିଷୟ ବସ୍ତୁରେ ଓ ବହୁସ୍ଥଳରେ ଶବ୍ଦ ବିନ୍ୟାସରେ ମଧ୍ୟ ଉଦ୍‌ଭଟ କାଳିଦାସଙ୍କ ଅନୁକରଣ କରିଛନ୍ତି । ଅନୁସନ୍ଧିତ୍ସୁ ପଣ୍ଡିତମାନେ କାଳିଦାସଙ୍କର 'ସ୍ୱୟଂବିଶୀର୍ଣ୍ଣ ଦ୍ରୁମପର୍ଣ୍ଣ ବୃତ୍ତିତା' ସଙ୍ଗେ ଉଦ୍‌ଭଟଙ୍କର କୁମାର-ସମ୍ଭବର 'ଶୀର୍ଣ୍ଣ ପର୍ଣ୍ଣାମ୍ବୁବାତାଃ' ପ୍ରଭୃତିରେ ଶବ୍ଦବିନ୍ୟାସ ମୂଳକ ସୌସାଦୃଶ୍ୟ ରହିଛି ବୋଲି ସୂଚିତ କରନ୍ତି । ଉଦ୍‌ଭଟ କେବଳ ଆଳଂକାରିକ ନ ଥିଲେ କବି ମଧ୍ୟ ଥିଲେ ।

## ବାମନ

ବାମନଙ୍କ 'କାବ୍ୟାଳଂକାର ସୂତ୍ର' ଅଲୋଚନା କ୍ରମଦୃଷ୍ଟିରୁ ତିନିଭାଗରେ ବିଭକ୍ତ:—ସୂତ୍ର, ବୃତ୍ତି ଓ ଉଦାହରଣ । ସେ ଅନେକ ସ୍ଥଳରେ ଉଦାହରଣ ଦେବା ପାଇଁ ଅନ୍ୟ ଲେଖକଙ୍କର ଶ୍ଲୋକ ଉଦ୍ଧାର କରିଛନ୍ତି ଏବଂ ନିଜରଚିତ ଶ୍ଲୋକ ମଧ୍ୟ ସ୍ଥଳ ବିଶେଷରେ ଦେଇଛନ୍ତି । ସେ ସ୍ୱୟଂ ଲେଖିଛନ୍ତି,—"ଏଭି ନିଦର୍ଶନୈଃ ସ୍ୱୀୟୈଃ ପରକୀୟୈଶ୍ଚ ପୁଷ୍କଳୈଃ"—ଅର୍ଥାତ୍ ଏଗ୍ରନ୍ଥର ଉଦାହରଣ ଗୁଡ଼ିକ ନିଜର ତଥା ଅନ୍ୟମାନଙ୍କର ଶ୍ଲୋକ ମଧ୍ୟ । ଗ୍ରନ୍ଥଟି ପାଞ୍ଚଗୋଟି ଅଧିକରଣରେ ବିଭକ୍ତ:—ଶାରୀରାଧିକରଣ, ଦୋଷ ଦର୍ଶନ, ଗୁଣ ବିବେଚନ, ଅଳଂକାରିକାଧିକରଣ ଏବଂ ପ୍ରାୟୋଗିକା-ଧିକାରଣ । ପ୍ରତ୍ୟେକ ଅଧିକାରଣ ପୁଣି କେତେଗୋଟି ଅଧ୍ୟାୟରେ ବିଭକ୍ତ । ଏଠାରେ ଉକ୍ତ ବିଭାଗ ସମ୍ପର୍କରେ ଗୋଟିଏ ନୂଆ କଥା ପ୍ରତି ଦୃଷ୍ଟି ଦେବାକୁ ହୁଏ । ବାମନଙ୍କ ପୂର୍ବବର୍ତ୍ତୀ ଲେଖକମାନେ ନିଜ ନିଜ ଗ୍ରନ୍ଥକୁ ପ୍ରଥମେ କେତେଗୋଟି ଅଧ୍ୟାୟରେ ବିଭକ୍ତ କରି

ପରେ ପ୍ରତ୍ୟେକ ଅଧ୍ୟାୟକୁ ପୁଣି କେତେଗୋଟି ଅଧିକରଣରେ ବିଭକ୍ତ କରିଥିଲେ । ବାମନ କୃତ ଗ୍ରନ୍ଥ ବିଷୟର ପାରଂପରିକ ରୀତି ଅବଲମ୍ବନ ନ କରି ଏକପ୍ରକାର ନୂତନ ପନ୍ଥା ଦିଖାଇଦେଲେ ।

## ସୂଚୀ ଓ ଉଲ୍ଲିଖିତ ଗ୍ରନ୍ଥ—

ପ୍ରଥମ ଅଧିକରଣରେ କାବ୍ୟର ପ୍ରୟୋଜନ, କାବ୍ୟାଧିକାରୀ ନିର୍ଣ୍ଣୟ, କାବ୍ୟର ଭେଦ, ଉପଭେଦ ପ୍ରଭୃତି, ଦ୍ୱିତୀୟରେ ପଦ-ବାକ୍ୟ—ବାକ୍ୟାର୍ଥ ଦୋଷ, ତୃତୀୟରେ ଗୁଣ, ଚତୁର୍ଥରେ ଅନୁପ୍ରାସ, ଉପମା, ଯମକ, ଉପମାର ଛଅ ଦୋଷ ଇତ୍ୟାଦି ଓ ଶେଷ ଅଧିକରଣରେ କାବ୍ୟରଚନା ସମ୍ବନ୍ଧେ ନାନାକଥା ଆଲୋଚିତ ହୋଇଛି । ବାମନ ପର୍ଯ୍ୟାୟୋକ୍ତ, ପ୍ରେୟ, ରସବତ୍, ଉଦାତ୍ତ, ଭାବିକ, ସୂକ୍ଷ୍ମ ପ୍ରଭୃତି କେତେକ ଅଳଂକାରର ଲକ୍ଷଣ ନିର୍ଦ୍ଦେଶ କରି ନାହାନ୍ତି । ସେ ନିମ୍ନଲିଖିତ ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ନାମୋଲ୍ଲେଖ କରିଛନ୍ତି:—କାମନ୍ଦକ ନୀତି, କାମଶାସ୍ତ୍ର, ଛନ୍ଦୋ ବିଚିତି, କାମମାତ୍ରା, ବିଶାଖିଲ, ଶୂଦ୍ରକ, ହରି ପ୍ରବୋଧ ।

## କାବ୍ୟାତ୍ମବାଦ—

ବାମନ ହେଉଛନ୍ତି କାବ୍ୟର ରୀତ୍ୟାତ୍ମବାଦର ପ୍ରତିଷ୍ଠାତା । ଏ ବାଦର ସ୍ୱରୂପ ବିଷୟରେ ଦ୍ୱିତୀୟ ଅଧ୍ୟାୟ ଦ୍ରଷ୍ଟବ୍ୟ । କାବ୍ୟ ପ୍ରକାଶ କାର ଏହାଙ୍କର ତୀବ୍ର ସମାଲୋଚନା କରିଛନ୍ତି । ବାମନ ବିଶେଷୋକ୍ତି ଅଳଂକାରର ଯେଉଁ ଲକ୍ଷଣ ଲେଖିଛନ୍ତି, ତାହା ବାସ୍ତବରେ ରୂପକ ଅଳଂକାରର ଲକ୍ଷଣ ବୋଲି ପଣ୍ଡିତ-ରାଜ ଜଗନ୍ନାଥ ରସଗଙ୍ଗାଧରରେ ଲେଖିଛନ୍ତି । ବାମନଙ୍କ ଟୀକାକାର ସହଦେବ କହନ୍ତି ଯେ ଏହାଙ୍କ ଗ୍ରନ୍ଥ ଲୁପ୍ତପ୍ରାୟ ହୋଇ ଯାଇଥିଲା

ଏବଂ ଉକ୍ତ ମୁକୁଳ ଭାଷ୍ୟର ପୁନରୁଦ୍ଧାର କଲେ । ବାମନ ନିଜେ ମଧ୍ୟ ନିଜଗ୍ରନ୍ଥର ଟୀକା ଲେଖିଥିଲେ । ଏହା ଛଡ଼ା ଗୋପେନ୍ଦ୍ର ତ୍ରିପୁରହରଭୂପାଳଙ୍କ କାମଧେନୁ ଓ ମହେଶ୍ୱର ସୁବୁଦ୍ଧି ମିଶ୍ରଙ୍କର ସାହିତ୍ୟ ସର୍ବସ୍ୱ କାବ୍ୟାଳଙ୍କାର ସୂତ୍ରର ଦୁଇଟି ପ୍ରସିଦ୍ଧ ଟୀକା ।

**ସମୟ—**

ରାଜତରଙ୍ଗିଣୀ ଅନୁସାରେ ବାମନ ଥିଲେ କାଶ୍ମୀର ନରପତି ଜୟାପୀଡ଼ଙ୍କ ଜଣେ ମନ୍ତ୍ରୀ * । ତେଣୁ ଏହାଙ୍କ ସମୟ ହେଉଛି ଅଷ୍ଟମ ଶତାବ୍ଦୀର ଶେଷାର୍ଦ୍ଧ ଓ ନବମ ଶତାବ୍ଦୀର ପ୍ରଥମାର୍ଦ୍ଧ । କହ୍ଲଣ ଜୟାପୀଡ଼ଙ୍କର ପୃଷ୍ଠପୋଷକତାରେ ବାମନ ଅଳଂକାର ଗ୍ରନ୍ଥରଚନାରେ ପ୍ରବୃତ୍ତ ହୋଇଥିଲେ ବୋଲି ଲେଖିଛନ୍ତି ।

**ଅଳଂକାରମାନଙ୍କର ସଂଖ୍ୟା :—**

ଆର୍ଷଗ୍ରନ୍ଥ ରୂପେ ସମ୍ମାନିତ ଅଗ୍ନି ପୁରାଣ ଓ ଭରତ ନାଟ୍ୟଶାସ୍ତ୍ର ଛାଡ଼ିଦେଲେ ଏ ପର୍ଯ୍ୟନ୍ତ ଆଲୋଚିତ ଆଳଂକାରିକମାନଙ୍କ ମଧ୍ୟରେ ନିମ୍ନଲିଖିତ ଲେଖକମାନେ ହେଉଛନ୍ତି ପ୍ରଧାନ ।—ଭଟ୍ଟି, ଭାମହ, ଦଣ୍ଡୀ, ଉଦ୍ଭଟ ଓ ବାମନ । ଏମାନଙ୍କ ମଧ୍ୟରୁ କାହାଦ୍ୱାରା କେଉଁ କେଉଁ ଅଳଂକାର ଆଲୋଚିତ ହୋଇଛି, ତାର ଏକ ସ୍ଥୂଳ ବର୍ଣ୍ଣନା ଦରକାର । ଏଠାରେ ଏ ସମ୍ପର୍କରେ ଅଳଂକାର ପାଠକମାନଙ୍କୁ ମନେ ରଖିବାକୁ ହେବ ଯେ, ବର୍ତ୍ତମାନ ଆମେ ଯେତେ ଯେତେ ଅଳଂକାରର ବର୍ଣ୍ଣନା କରୁ ସେ ସବୁ ପ୍ରାଚୀନ କାଳରୁ ନ ଥିଲା । ଯୁଗ ଯୁଗ ଧରି ଅଳଂକାରର ଚର୍ଚ୍ଚାର ପରମ୍ପର ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ

---

*ମନୋରଥଃ ଶଙ୍ଖଦତ୍ତଶ୍ଚଟକଃ ସନ୍ଧିମାଂସ୍ତଥା । ବଭୂବୁଃ କବୟସ୍ତସ୍ୟ ବାମନାଦ୍ୟାଶ୍ଚ ମନ୍ତ୍ରିଣଃ ।*

ପଣ୍ଡିତମାନେ ନାନା ଗ୍ରନ୍ଥ ଓ ପ୍ରବନ୍ଧରେ ମୌଳିକ ଚିନ୍ତା କରିବା ଫଳରେ ଏହି ନଗଣ୍ୟ ସଂଖ୍ୟାରୁ ଅଳ୍ପ ଅଳଂକାର ସଂଖ୍ୟା ଶତାଧିକ ହୋଇ ପାରିଛି । ଏପରି ଭରତ ନାଟ୍ୟଶାସ୍ତ୍ରରେ କେବଳ ଉପମା, ଦୀପକ, ରୂପକ ଓ ଯମକ—ଏ ଚାରୋଟି ଅଳଂକାର ବ୍ୟତୀତ ଅନ୍ୟ କାହାରି ନାମୋଲ୍ଲେଖ ପର୍ଯ୍ୟନ୍ତ ନାହିଁ ।

ଉଲ୍ଲିଖିତ ଆଳଂକାରିକ ପଣ୍ଡିତ ମଧ୍ୟରୁ ନିମ୍ନଲିଖିତ ସବୁ ଅଳଂକାର ପ୍ରତ୍ୟେକେ ଆଲୋଚନା କରିଛନ୍ତି । ଅତିଶୟୋକ୍ତି, ଅନୁପ୍ରାସ ଅପହ୍ନୁତି, ଅର୍ଥାନ୍ତର ନ୍ୟାସ, ଆକ୍ଷେପ, ଉତ୍ପ୍ରେକ୍ଷା, ଉଦାତ୍ତ (ଭଟ୍ଟିଙ୍କ ଉଦାର), ଉପମା, ଦୀପକ (ଉଦ୍‌ଭଟଙ୍କ ନିଦର୍ଶନା,), ପରିବୃତ୍ତି, ଯଥା ସଂଖ୍ୟ [ବାମନଙ୍କ 'କ୍ରମ'] ରୂପକ, ବିଭାବନା, ବିରୋଧ, ବିଶେଷୋକ୍ତି ( ଅନ୍ୟାନ୍ୟଙ୍କ ଲକ୍ଷଣଠାରୁ ବାମନଙ୍କ ଏ ଅଳଂକାରର ଲକ୍ଷଣ ଟିକିଏ ଭିନ୍ନ ) ବ୍ୟତିରେକ, ବ୍ୟାଜସ୍ତୁତି, ଶ୍ଳିଷ୍ଟ (ବାମନଙ୍କ ଶ୍ଳେଷ) ସଂସୃଷ୍ଟି, ସମାସୋକ୍ତି ଓ ସହୋକ୍ତି ।

ଏପରି କେତେକ ଅଳଂକାର ଦେଖାଯାଏ, ଯାହା କେବଳ ଜଣେ ଜଣେ ଲେଖକ ଆଲୋଚନା କରିଛନ୍ତି । ତଳେ ତାଲିକା ଦିଆଗଲା —

ଆବୃତ୍ତି ଅଳଂକାର··· ···ଦଣ୍ଡୀ କେବଳ ଆଲୋଚନା କରିଛନ୍ତି ।
ଲେଶ ,,
ନିପୁଣ ଭଟ୍ଟି
ବାର୍ତ୍ତା ,, ,,
ଅତ୍ୟୋକ୍ତି ବାମନ
ସଙ୍କର ଉଦ୍‌ଭଟ

ଆବୃତ୍ତି ଅଲଂକାର······ଦଣ୍ଡୀ କେବଳ ଆଲୋଚନା କରିଛନ୍ତି।
ସୂକ୍ଷ୍ମ ଦଣ୍ଡୀ ,,
ଦୃଷ୍ଟାନ୍ତ ,, ଉଦଭଟ୍ଟ ,, ,,
କାବ୍ୟଲିଙ୍ଗ ,, ,,
ଛେକାନୁପ୍ରାସ ,, ,, ,, ,, ,,

ପୁଣି ଏପରି କେତେକ ଅଲଂକାର ଅଛି ଯାହାକୁ କେବଳ ଜଣକ ଛଡ଼ା ଅନ୍ୟ ଗ୍ରନ୍ଥକାରଗଣ ଯାକ ଆଲୋଚନା କରିଛନ୍ତି ଅନ୍ୟତ୍ର ଅଲଂକାର କେବଳ ଦଣ୍ଡୀଙ୍କ ଛଡ଼ା ଅନ୍ୟମାନେ କରିଛନ୍ତି। ଯେପରି

ଉପମେୟୋପମା କେବଳ ଦଣ୍ଡୀଙ୍କ ଛଡ଼ା
ଅପ୍ରସ୍ତୁତ ପ୍ରଶଂସା ଭଟ୍ଟିଙ୍କ
ପ୍ରତିବସ୍ତୂପମା ,, ,,
ପ୍ରେୟଃ ବାମନଙ୍କ ,,
ଭାବିକ
ଉର୍ଜସ୍ୱି
ପର୍ଯ୍ୟାୟୋକ୍ତ ,,
ରସବତ୍ ,, ,, ,,
ଯମକ ,, ଉଦ୍ଭଟଙ୍କ ଛଡ଼ା
ସସନ୍ଦେହ ,, ଦଣ୍ଡୀଙ୍କ

---

## ଷଷ୍ଠ ପରିଚ୍ଛେଦ

[ନବମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧଠାରୁ ଏକାଦଶ ଶତାବ୍ଦୀ
ପର୍ଯ୍ୟନ୍ତ ]

### ରୁଦ୍ରଟ

ରୁଦ୍ରଟ ହେଉଛନ୍ତି କାବ୍ୟାଳଂକାର ପ୍ରଣେତା । ଏହା ଷୋଡ଼ଶ ଅଧ୍ୟାୟାତ୍ମକ ଏକ ପ୍ରକାଣ୍ଡ ଗ୍ରନ୍ଥ । ରୁଦ୍ରଟ ଜଣେ ଅସାଧାରଣ ପଣ୍ଡିତ ଥିଲେ ଏବଂ ଯେଉଁଠାରେ ସେ ଉଦାହରଣ ଦେଇଛନ୍ତି, ସେଠାରେ ଅନ୍ୟର ଶ୍ଳୋକକୁ ଅପେକ୍ଷା କରି ନାହାନ୍ତି । ସମସ୍ତ ଉଦାହରଣ ଶ୍ଳୋକ ସେ ନିଜେ ରଚନା କରି ଅଛନ୍ତି । ତଳେ ତାଙ୍କ ଗ୍ରନ୍ଥରେ ଆଲୋଚିତ ବିଷୟଗୁଡ଼ିକର ଏକ ଅତି ସଂକ୍ଷିପ୍ତ ସୂଚୀ ପ୍ରଦତ୍ତ ହେଲ :—

ପ୍ରଥମ ଅଧ୍ୟାୟ—କାବ୍ୟର ପ୍ରୟୋଜନ, ଉଦ୍ଦେଶ୍ୟ ଓ ହେତୁ ।

ଦ୍ୱିତୀୟ ,, —ପାଞ୍ଚଗୋଟି ଶବ୍ଦାଳଂକାର—ବକ୍ରୋକ୍ତି, ଅନୁପ୍ରାସ, ଯମକ, ଶ୍ଳେଷ ଓ ଚିତ୍ର । ଚାରିଗୋଟି ରୀତି—ବୈଦର୍ଭୀ, ପାଞ୍ଚାଲୀ, ଲାଟୀ, ଗୌଡ଼ୀ । ପାଞ୍ଚଗୋଟି ବୃତ୍ତି—ମଧୁରା, ଲଳିତା, ପ୍ରୌଢ଼ା, ପରୁଷା, ଭଦ୍ରା । ସଂସ୍କୃତ ପ୍ରଭୃତି ଭାଷାର ବିସ୍ତାର ।

ତୃତୀୟ ଅଧ୍ୟାୟ—ଯମକ ଅଳଂକାରର ବିସ୍ତୃତ ଆଲୋଚନା ।

ଚତୁର୍ଥ ,, ଆଠ ପ୍ରକାର ଶ୍ଳେଷ—ବର୍ଣ୍ଣ, ପଦ, ଲିଙ୍ଗ, ଭାଷା, ପ୍ରକୃତି, ପ୍ରତ୍ୟୟ, ବିଭକ୍ତି, ବଚନ [ ଭେଦରେ ]

ପଞ୍ଚମ ଅଧ୍ୟାୟ—ଚିତ୍ର-ଚକ୍ରବନ୍ଧ, ମୁରଜ ବନ୍ଧ, ପ୍ରହେଳିକା ଇତ୍ୟାଦି

ଷଷ୍ଠ ଅଧ୍ୟାୟ —ପଦ ଓ ବାକ୍ୟ ଦୋଷ ।
ସପ୍ତମ ,, —ବିଂଶ ଅଳଂକାର ବିଗ୍ରହ ।
ଅଷ୍ଟମ —ଔପମ୍ୟ-ମୂଳକ ଏକବିଂଶ
ନବମ —ଅତିଶୟ-ମୂଳକ ଦ୍ୱାଦଶ ,, ,,
ଦଶମ ,, —ଦଶପ୍ରକାର ଶୁଦ୍ଧଶ୍ଲେଷ ଓ ଦୁଇପ୍ରକାର ସଙ୍କର ।
ଏକାଦଶ ,, —ଅର୍ଥଦୋଷ ଓ ଉପମାର ଗୁରିଗୋଟି ଦୋଷ ।
ଦ୍ୱାଦଶ ,, —ରସ ନିରୂପଣ ।
ତ୍ରୟୋଦଶ,, —ସମ୍ଭୋଗ ଶୃଙ୍ଗାର ।
ଚତୁର୍ଦ୍ଦଶ ,, —ବିପ୍ରଲମ୍ଭ ଶୃଙ୍ଗାର—ବିରକ୍ତା ସ୍ତ୍ରୀ ଲୋକର ଉପାୟ ଷଟ୍କ ।

ପଞ୍ଚଦଶ — ବୀରରସ ପ୍ରଭୃତିର ଆଲୋଚନା ।
ଷୋଡ଼ଶ ,, —କାବ୍ୟର ବିଭିନ୍ନ ବିଭାଗ—କଥା, ଆଖ୍ୟାୟିକା ପ୍ରଭୃତିର ଲେଖନ ପ୍ରଣାଳୀ ଇତ୍ୟାଦି ।

## ରୁଦ୍ରଟଙ୍କ ବିଶେଷତ୍ୱ—

ବିଷୟ ବସ୍ତୁର ଆଲୋଚନା କ୍ରମ ଦେଖିଲେ ରୁଦ୍ରଟଙ୍କର ମୌଳିକତା ସ୍ପଷ୍ଟ ଉପଲବ୍ଧ ହୁଏ । କିନ୍ତୁ ଏତିକିରେ ତାଙ୍କ ବିଶେଷତ୍ୱ ଅବୋଁ ପୂର୍ଣ୍ଣ ପ୍ରକାଶିତ ହୁଏ ନାହିଁ । ପୂର୍ବେ ଆଲୋଚିତ ଆଳଂକାରିକମାନଙ୍କ ସଙ୍ଗେ ଏହାଙ୍କର ବିଗ୍ରହ କରାଗଲେ ଦେଖାଯିବ, ନିମ୍ନ-ଲିଖିତ ବିଷୟ ଗୁଡ଼ିକ ରୁଦ୍ରଟଙ୍କ ବିଶେଷତ୍ୱର ଚରମ ନିଦର୍ଶନ :—

( କ ) ଭାମହ ଓ ଉଦ୍ଭଟଙ୍କ ମତରେ ଉପମେୟୋପମା ଓ ଅନନ୍ୱୟ, ଏ ଅଳଂକାର ଦୁଇଟିର ସ୍ୱାତନ୍ତ୍ର୍ୟ ଅଛି । ଅର୍ଥାତ୍ ଏ ଦୁଇଟି ପରସ୍ପର ସମ୍ବନ୍ଧ ବିହୀନ ଅଳଂକାରଦ୍ୱୟ । କିନ୍ତୁ ରୁଦ୍ରଟଙ୍କ ବିଗ୍ରହରେ

ଏ ସିଦ୍ଧାନ୍ତ ରଭ ଅମୂଳକ । ସେ କହିଛନ୍ତି, ଏ ଦୁଇଟିଯାକ କେବଳ ଉପମା ଅଳଂକାରର ଦୁଇଟି ଭେଦ । ଯଥା :—ଉପମେୟୋପମା ଓ ଅନନ୍ୱୟୋପମା । ଅତଏବ ଗୋଟିଏ ବସ୍ତୁର ଦୁଇଟି ଭେଦ କେବଳ ହେଲେ ଦୁଇଟି ସମ୍ପୂର୍ଣ୍ଣ ବସ୍ତୁ ବୋଲି ପରିଗୃହୀତ ହୋଇ ପାରିବେ ନାହିଁ ।

( ଖ) ଭାମହଙ୍କ ମତରେ ଯାହା ବ୍ୟାଜସ୍ତୁତି ଅଳଂକାର, ରୁଦ୍ରଟଙ୍କ ମତରେ ତାହା ବ୍ୟାଜଶ୍ଳେଷ ହେବା ଉଚିତ ।

( ଗ ଦଣ୍ଡୀଙ୍କ ମତରେ ଯାହା ସ୍ୱଭାବୋକ୍ତି ଅଳଂକାର, ରୁଦ୍ରଟଙ୍କ ମତରେ ତାହା ଜାତି ଅଳଂକାର ।

( ଘ ) ରୁଦ୍ରଟ 'ହେତୁ' ନାମକ ଯେଉଁ ଅଳଂକାର ଅଲୋଚନା କରିଛନ୍ତି, ତାଙ୍କ ପରବର୍ତ୍ତୀ ଲେଖକ ମମ୍ମଟ ତାହା ଅଦୌ ଅଳଂକାର ନାମର ଯୋଗ୍ୟ ନୁହେଁ ବୋଲି କହିଛନ୍ତି ।

(ଙ) ରୁଦ୍ରଟ ମତ, ସାମ୍ୟ ଓ ପିହିତ ପ୍ରଭୃତି କେତେକ ଅଳଂକାରର ବର୍ଣ୍ଣନ କରିଛନ୍ତି, ଯାହା ତାଙ୍କ ପୂର୍ବବର୍ତ୍ତୀ କୌଣସି ଅଳଂକାରିକ ଉଲ୍ଲେଖ କରିନାହାନ୍ତି ।

ରୁଦ୍ରଟ କାବ୍ୟର ଅଳଂକାର କେବଳ ଅସ୍ଥି ବୋଲି ସ୍ଥିର କରିଛନ୍ତି । ଏଥିରୁ ଅବଶ୍ୟ ବୁଝିବା ଉଚିତ ନୁହେ ଯେ ତାଙ୍କ ମତରେ ରସ ପ୍ରଭୃତି ନିତାନ୍ତ ଅପଦାର୍ଥ ଓ ସର୍ବଥା ନଗଣ୍ୟ । ତାଙ୍କ ଦୃଷ୍ଟିରେ କାବ୍ୟରେ ରସର ଯଥେଷ୍ଟ ପ୍ରାଧାନ୍ୟ ରହିଛି ମାତ୍ର ଅଳଂକାର କେବଳ ସର୍ବତୋଭାବେ ପ୍ରଧାନ ଏବଂ କାବ୍ୟରେ ଏହାର ସ୍ଥାନ ପ୍ରାଣୀ ଦେହରେ ଅସ୍ଥିର ସ୍ଥାନ ପରି । ପରବର୍ତ୍ତୀ ଲେଖକମାନଙ୍କ

ମଧ୍ୟରେ ରାଜଶେଖର, ପ୍ରତିହାରେନ୍ଦୁରାଜ, ଧନିକ, ଧ୍ୱନ୍ୟାଲୋକର ଲୋଚନଟୀକାକାର ଓ ମମ୍ମଟ ପ୍ରଭୃତି ଅନେକ ଅଲଂକାରିକ ରୁଦ୍ରଟଙ୍କ ମତ ଉଦ୍ଧାର କରିଛନ୍ତି ।

**ସମୟ—**

ନବମ ଶତାବ୍ଦୀ ପର୍ଯ୍ୟନ୍ତ ଯେତେ ଜଣ ଅଲଂକାରିକଙ୍କ ପରିଚୟ ମିଳିପାରିଛି, ସେମାନଙ୍କଠାରୁ ରୁଦ୍ରଟ ଅଧିକ ସଂଖ୍ୟକ ଅଲଂକାରର ଆଲୋଚନା କରିଛନ୍ତି ଏବଂ ଦଶମ ଶତାବ୍ଦୀର ଅଲଂକାରିକମାନେ ତାଙ୍କର ଉଲ୍ଲେଖ କରିଛନ୍ତି । ତେଣୁ ଯଥାସମ୍ଭବ ସେ ନବମ ଶତାବ୍ଦୀର ମଧ୍ୟ ଭାଗରେ ବା ତାର କିଛି ପରବର୍ତ୍ତୀ କାଳରେ ଗ୍ରନ୍ଥ ରଚନା କରିଥିଲେ ।

ରୁଦ୍ରଟଙ୍କ ଟୀକାକାରମାନଙ୍କ ମଧ୍ୟରେ ସର୍ବପ୍ରଥମ ନମିସାଧୁଙ୍କ ନାମ ଉଲ୍ଲେଖ୍ୟ । କିନ୍ତୁ ଟୀକାକାରଙ୍କ ବ୍ୟକ୍ତିଗତ ଜୀବନ ବିଷୟରେ ବିଶେଷ କିଛି ଜଣା ଯାଇନାହିଁ । ସେ ଜଣେ ଜୈନ ଧର୍ମାବଲମ୍ବୀ ଥିଲେ ଏତିକି ମାତ୍ର ଗବେଷଣା ଫଳରେ ଜଣାଯାଇଛି । ଟୀକାରେ ସେ ବହୁ ପ୍ରାଚୀନ ଲେଖକଙ୍କ ନାମ ଉଲ୍ଲେଖ କରିଛନ୍ତି, ଯାହାକି ସଂସ୍କୃତ ସାହିତ୍ୟର ଇତିହାସ ଲେଖକ ପକ୍ଷରେ ମୂଲ୍ୟବାନ । ଉଲ୍ଲିଖିତ ଗ୍ରନ୍ଥ ଓ ଗ୍ରନ୍ଥକାର ମଧ୍ୟରେ ନିମ୍ନଲିଖିତ ନାମ ଗୁଡ଼ିକ ଅନ୍ତର୍ଭୁକ୍ତ—ଅର୍ଜ୍ଜୁନ ଚରିତ, ଉଦ୍‌ଭଟ, କାଦମ୍ବରୀ, କିରାତାର୍ଜ୍ଜୁନୀୟ; ଜୟଦେବ ନାମ୍ନୀ ଜଣେ ଛନ୍ଦ ଲେଖକ, ଦଣ୍ଡୀ, ନାମମାଳା, ବ୍ୟାକରଣ ଚୂଡ଼ାମଣି, ପାଣିନି ପ୍ରଣୀତ ପାତାଳବିଜୟ କାବ୍ୟ, ପିଙ୍ଗଳ, ବୃହତ୍‌କଥା, ଭରତ, ଭାମହ, ଭର୍ତ୍ତୃହରି, ମାଘ, ମାଳତୀମାଧବ, ମୃଚ୍ଛକଟିକ, ମେଧାବୀରୁଦ୍ର, ମେଘଦୂତ, ରତ୍ନାବଳୀ,

ବାମନ, ବେଣୀ-ସଂହାର, ଦୁର୍ଗେଶ୍ୱର । ଉକ୍ତ ଟୀକାର ନାମ 'ତ୍ରିପୁରନ' ଓ ଏହା ଏକାଦଶ ଶତାବ୍ଦୀର ମଧ୍ୟଭାଗରେ ଲେଖାଯାଇଥିଲା । ଏହା ବ୍ୟତୀତ ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ଆଶାଧର ଅନ୍ୟ ଏକ ଟୀକା ଲେଖିଥିଲେ । କାବ୍ୟାଲଂକାର ଉପରେ ବଲ୍ଲଭଦେବଙ୍କର ଏକ ଟୀକା ଓ ବନତରଙ୍ଗିଣୀ ନାମକ ଅନ୍ୟ ଏକ ଟୀକାଥିବା ଜଣାପାଉଛି ।

## ଶୃଙ୍ଗାର ତିଳକ—

ଏହା କାହାର ଗ୍ରନ୍ଥ ଏ ପର୍ଯ୍ୟନ୍ତ ଜଣାଯାଇ ନାହିଁ । ସାଧାରଣତଃ ଏହାର ପ୍ରଣେତା ରୁଦ୍ରଭଟ୍ଟ ବୋଲି ଧରାଯାଏ, କିନ୍ତୁ ଅନେକେ ବର୍ତ୍ତମାନ କହୁଲେଣି, ଏହାର ଲେଖକ ରୁଦ୍ରଭଟ୍ଟ ନୁହନ୍ତି, କିନ୍ତୁ ରୁଦ୍ର । ଅଧ୍ୟାପକ Weber, Aufrecht, Pischel ଙ୍କ ମତରେ ରୁଦ୍ରଟ ଓ ରୁଦ୍ରଭଟ୍ଟ ଦୁଇଜଣ ନୁହନ୍ତି, ଜଣେ । କିନ୍ତୁ ଡକ୍ଟର Jacobi ଙ୍କ ମତରେ ଏ ଦୁହେଁ ଜଣେ ନୁହନ୍ତି; ଦୁଇଜଣ । ପ୍ରଥମ କଥିତ ଅଧ୍ୟାପକମାନଙ୍କ ଯୁକ୍ତି ଏହି ଯେ ଦୁଇଟି ଯାକ ନାମର ବଡ଼ ନିକଟ ସାଦୃଶ୍ୟ ରହିଛି । କିନ୍ତୁ ସମାଲୋଚକମାନେ କେବଳ ନାମ ସାମ୍ୟମୂଳକ ଉକ୍ତ ମତ ବିରୁଦ୍ଧରେ ଅନେକ ଯୁକ୍ତି ଉପସ୍ଥାପିତ କରିଛନ୍ତି । ସେମାନଙ୍କ ମତରେ ଏମନାମା ଲେଖକ ଭିନ୍ନ ଯୁଗରେ ଥିବା ସମ୍ଭବ ଏବଂ ଇତିହାସର ପ୍ରମାଣସହ ଏହାର ସତ୍ୟତା ପ୍ରତିପାଦନ କରାଯାଇ ପାରିବ । ବିରୁଦ୍ଧ ପକ୍ଷର ଯୁକ୍ତିଗୁଡ଼ିକ ମଧ୍ୟରୁ ତଳେ କେତୋଟିର ଅବତାରଣା କରାଯାଉଛି—

[କ] ରୁଦ୍ରଟଙ୍କ ବହୁଅଂଶ ଦଶମ ଶତାବ୍ଦୀର ଲେଖକମାନେ ଉଦ୍ଧାର କରିଛନ୍ତି, କିନ୍ତୁ ଅଳଂକାର ଶାସ୍ତ୍ରର କେତେକ ବିଷୟବସ୍ତୁର ସୁନ୍ଦର ଆଲୋଚନା ହୋଇଥିବା ଶୃଙ୍ଗାର ତିଳକର ସୂଚନା ପର୍ଯ୍ୟନ୍ତ

କୌଣସିଠାରେ ନାହିଁ । ଏଥିରୁ ଏହା ମଧ୍ୟ ଅନୁମାନ କରାଯାଇ ପାରେ—ଯଦ୍ୟପି ପୂର୍ଣ୍ଣ ଯୌକ୍ତିକତା ଏଥିରେ ନାହିଁ—ଯେ ଶୃଙ୍ଗାର ତିଳକର ଲେଖକ ଦଶମ ଶତାବ୍ଦୀର ପରବର୍ତ୍ତୀ ।

[ଖ] ରୁଦ୍ରଟ ସ୍ୱୀୟ କାବ୍ୟାଲଂକାରରେ ଏକାଦଶଠାରୁ ଦଶମ ଅଧ୍ୟାୟ ମଧ୍ୟରେ ଯାହାସବୁ ଆଲୋଚନା କରିଛନ୍ତି ସେ ସବୁ କେବଳ ଶୃଙ୍ଗାର ତିଳକର କଥାବସ୍ତୁ । ଜଣେ ଲେଖକ ନିଜର ଏକ ପ୍ରକାଣ୍ଡ ଗ୍ରନ୍ଥରେ ଯାହା ସମାବେଶ ବା ଆଲୋଚନା କରିଛନ୍ତି, ତାହା କେବଳ ଆଲୋଚନା କରି ଅନ୍ୟଏକ ଗ୍ରନ୍ଥ କାହିଁକି ପ୍ରଣୟନ କରନ୍ତା ?

[ଗ] ଉପର୍ଯ୍ୟୁକ୍ତ ଯୁକ୍ତିର ସମାଲୋଚନାରେ ହୁଏତ ଏହା କୁହାଯାଇପାରେ, ପ୍ରଥମେ ସେ ଶୃଙ୍ଗାର-ତିଳକ ଲେଖିଥିଲେ ଏବଂ ପରବର୍ତ୍ତୀ ଗ୍ରନ୍ଥ ଅର୍ଥାତ୍ କାବ୍ୟାଲଂକାର (ଶୃଙ୍ଗାର ତିଳକରେ ଆଲୋଚିତ ହୋଇଥିବା ବିଷୟମାନଙ୍କର ସନ୍ନିବେଶ ଅଭାବରେ) କାଳେ ଅସମ୍ପୂର୍ଣ୍ଣ ବୋଲି ବିବେଚିତ ହୋଇପାରେ, ଏ ଭୟରେ ପୁଣି ସେ ସବୁ ତହିଁରେ ନିବଦ୍ଧ କଲେ । କିନ୍ତୁ ଏ ପ୍ରତିଯୁକ୍ତି ମଧ୍ୟ ଠିକ୍ ନୁହେଁ, କାରଣ ଶୃଙ୍ଗାର ତିଳକ ମତରେ ରସ 'ନଅ' ପ୍ରକାର ଏବଂ ରୁଦ୍ରଟଙ୍କ ମତରେ ରସମାନଙ୍କର ସଂଖ୍ୟା ଦଶ ।

(ଘ) କେବଳ ଏତିକି ନୁହେଁ । ଶୃଙ୍ଗାର ତିଳକରେ ଚାରିଗୋଟି ବୃତ୍ତିର ବିସ୍ତୃତସ୍ଥଳେ ରୁଦ୍ରଟ ପାଞ୍ଚଗୋଟି ବୃତ୍ତିର ଆଲୋଚନା କରିଛନ୍ତି ।

[ଙ] ଏତଦ୍ବ୍ୟତୀତ ଅନେକ ସ୍ଥଳରେ ବିଷୟବସ୍ତୁର ଆଲୋଚନା କ୍ରମ ଓ ବର୍ଣ୍ଣନ ଭଙ୍ଗୀରେ ମଧ୍ୟ ପାର୍ଥକ୍ୟ ପରିଲକ୍ଷିତ

ହୁଏ । ଉଦାହରଣ ସ୍ୱରୂପ ଉଲ୍ଲେଖ କରା ଯାଇପାରେ, ରୁଦ୍ରଟ ପ୍ରଥମେ ନାୟିକାମାନଙ୍କର ତିନିଗୋଟି ବିଭାଗ କରି (ସ୍ୱକୀୟା, ପରକୀୟା ଓ ବେଶ୍ୟା ) ପରେ ଉପବିଭାଗମାନ ଆଲୋଚନା କରିଛନ୍ତି । କିନ୍ତୁ ଶୃଙ୍ଗାରତିଳକରେ ଏକାଦିକ୍ରମେ ଅଷ୍ଟବିଧ ନାୟିକାର ବିବରଣ ଦେଖିବାକୁ ମିଳେ ।

ଏ ସବୁ ପୁଙ୍ଖାନୁପୁଙ୍ଖ ବିବେଚନା କଲେ ନାମସାମ୍ୟ ସତ୍ତ୍ୱେ ଏ ଦୁଇ ଲେଖକଙ୍କୁ ଜଣେ ବୋଲି ଗ୍ରହଣ କରାଯାଇ ପାରିବ ନାହିଁ । ଶୃଙ୍ଗାର ତିଳକର କଳେବର ବିଶାଳ ନୁହେଁ । ଏହା ତିନିଗୋଟି ପରିଚ୍ଛେଦରେ ବିଭକ୍ତ । ତଳେ ପ୍ରତି ପରିଚ୍ଛେଦର ଏକ ସଂକ୍ଷେପ—ସୂଚିମ ନ ଦିଆଗଲା :—

ପ୍ରଥମ ପରିଚ୍ଛେଦ—ରସ, ନାୟକନାୟିକା ଭେଦ ।
ଦ୍ୱିତୀୟ „ —ବିପ୍ରଲମ୍ଭ ଶୃଙ୍ଗାର, କାମର ଦଶାବସ୍ଥା ।
ତୃତୀୟ „ —କୌଶିକୀ ପ୍ରଭୃତି ବୃତ୍ତିର ବର୍ଣ୍ଣନ ।

ରୁଦ୍ରଭଟ୍ଟଙ୍କ ଜୀବନକାଳ ଏ ପର୍ଯ୍ୟନ୍ତ ଜଣା ଯାଇନାହିଁ । ଅନେକ ପଣ୍ଡିତ ଅନୁମାନ କରନ୍ତି, ହେମଚନ୍ଦ୍ର ଓ ବିଶ୍ୱନାଥଙ୍କ ଗ୍ରନ୍ଥ ବ୍ୟତୀତ ଅନ୍ୟକ୍ର ଉକ୍ତ ଗ୍ରନ୍ଥର ଅଂଶମାନ ଉଦ୍ଧୃତ ହୋଇ ନ ଥିବାରୁ ଏ ଯଥାସମ୍ଭବ ଦ୍ୱାଦଶ ଶତାବ୍ଦୀର ଲେଖକ ।

## ଧ୍ୱନ୍ୟାଲୋକ

ଆନନ୍ଦ ବର୍ଦ୍ଧନ ହେଉଛନ୍ତି 'ଧ୍ୱନ୍ୟାଲୋକ'ର ପ୍ରଣେତା । ବାସ୍ତବରେ ଅଲଂକାର ଶାସ୍ତ୍ର ଜଗତରେ ଧ୍ୱନ୍ୟାଲୋକ ଯୁଗାନ୍ତର ସୃଷ୍ଟି କରି ଦେଇଛି ଏବଂ 'ଧ୍ୱନି'ର ଅନେକ ବିକାରଣ କରି

ପ୍ରତିପକ୍ଷ ମତବାଦୀଙ୍କୁ ଅନ୍ତର୍ଭୁକ୍ତ କରି ଦେଇଛନ୍ତି । ଗ୍ରନ୍ଥଟି ଚାରିଗୋଟି ଉଦ୍ୟୋତରେ ବିଭକ୍ତ । ବିଖ୍ୟାତ ଟୀକାକାର ଅଭିନବ ଗୁପ୍ତ ଶେଷଟି ଛଡ଼ା ପ୍ରଥମ ତିନୋଟିର ଟୀକା କରି ଯାଇଛନ୍ତି । ତଳେ ଗ୍ରନ୍ଥଗତ ବିଷୟର ସଂକ୍ଷେପ—ସୂଚନା ଉଦ୍ୟୋତ ଅନୁକ୍ରମେ ଦିଆ-ଯାଉଛି :—

ପ୍ରଥମ ଉଦ୍ୟୋତ—'ଧ୍ୱନି' ଅନ୍ୟ ଆଳଂକାରିକଙ୍କ ଧ୍ୱନି ବିଷ-ୟକ ମତ—ବାଚ୍ୟାର୍ଥ ଓ ପ୍ରତୀୟମାନାର୍ଥ—ପ୍ରତୀୟମାନର ଭେଦ—ବସ୍ତୁ—ଅଳଂକାର—ରସ—ଧ୍ୱନିର ସହୃଦୟ ହୃଦୟୈକ ବେଦ୍ୟତା—ଏହା କାବ୍ୟର ମୁଖ୍ୟ ଅଙ୍ଗ—ଧ୍ୱନିକାବ୍ୟର ଲକ୍ଷଣ—ସମାସୋକ୍ତି ପ୍ରଭୃତିରେ ପ୍ରତୀୟମାନାର୍ଥ ଥିଲେ ସୁଦ୍ଧା ତହିଁରେ ବାଚ୍ୟାର୍ଥ ପ୍ରଧାନ—ଧ୍ୱନିର ଉପଚରିତ୍ୱ—ଲକ୍ଷଣଠାରୁ ଧ୍ୱନିର ପୃଥକ୍କରଣ ।

ଦ୍ୱିତୀୟ ଉଦ୍ୟୋତ—ବିଭିନ୍ନ ଧ୍ୱନିର ସୋଦାହରଣ ଆଲୋଚନା—ବ୍ୟଙ୍ଗ୍ୟର ରସଗର୍ଭିତତା—ଗୁଣ ଓ ଅଳଂକାରର ସ୍ଥାନ ତଥା ସ୍ୱରୂପ ନିରୂପଣ—

ତୃତୀୟ ଉଦ୍ୟୋତ—ନାନା ଦୃଷ୍ଟିକୋଣରୁ ଧ୍ୱନିର ଭେଦ—ଗୁଣ ଓ ସଂଘଟନା—ରସର ବିକାଶ—ଗୁଣ ବୃତ୍ତି ଓ ବ୍ୟଙ୍ଗ୍ୟ—ଗୁଣୀଭୂତ ବ୍ୟଙ୍ଗ୍ୟ—ଶବ୍ଦଶକ୍ତି ଇତ୍ୟାଦି ।

ଚତୁର୍ଥ ଉଦ୍ୟୋତ—କବିପ୍ରତିଭା—କାବ୍ୟର ସୀମାନିର୍ଦ୍ଦେଶ—ପ୍ରତିଭାଶାଳୀ ଲେଖକଙ୍କର ରଚନାଗତ ସାଦୃଶ୍ୟ ଇତ୍ୟାଦି ।

ଧ୍ୱନ୍ୟାଲୋକ ହେଉଛି ଧ୍ୱନ୍ୟାତ୍ମବାଦର ମୂଳ ଗ୍ରନ୍ଥ । ଏହାର ବିଷୟର ପ୍ରଣାଳୀ ବଡ଼ ଅଦ୍ଭୁତ ଧରଣର । ଏଥିରେ ରସାତ୍ମବାଦ

ପ୍ରଭୃତିର ନିର୍ବଚନ ସଙ୍ଗେ ସଙ୍ଗେ ବହୁ ଯୁକ୍ତିଯୁକ୍ତ ଭାବରେ ନିର୍ଦ୍ଦେଶ ଦିଆଯାଇଛି, ଧ୍ୱନି ବ୍ୟତୀତ ଅନ୍ୟ କୌଣସି ଆଲଂକାରିକ ବିଭାଗ କାବ୍ୟର ଆତ୍ମାରୂପେ ନିର୍ଣ୍ଣୀତ ହୋଇ ପାରିବ ନାହିଁ । ଆନନ୍ଦବର୍ଦ୍ଧନ ସ୍ୱୀୟ ଗ୍ରନ୍ଥରେ ଯେଉଁ ବହୁ ସଂଖ୍ୟକ ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ନାମ ଉଲ୍ଲେଖ କରିଛନ୍ତି ତନ୍ମଧ୍ୟରେ ଉଲ୍ଲେଖିତ ନାମଗୁଡିକ ଅନ୍ତର୍ଭୁକ୍ତ—ରାମାୟଣ, ମହାଭାରତ, ଗାଥାସପ୍ତଶତୀ, କାଳିଦାସ, ଅର୍ଜୁନ ଚରିତ, କାଦମ୍ବରୀ, ଉଦ୍‌ଭଟ, ଧର୍ମକୀର୍ତ୍ତି, ଭାମହ, ନାଗାନନ୍ଦ, ମଧୁମଥନ—ବିଜୟ, ଭଟ୍ଟବାଣ, ରତ୍ନାବଳୀ, ରଘୁ, ରାମାଭ୍ୟୁଦୟ, ବିଷମ ବାଣଲୀଳା, ବେଣୀ ସଂହାର, ସେତୁକାବ୍ୟ, ହରିବଂଶ, ହର୍ଷଚରିତ, ଗାଥା ସପ୍ତଶତୀ, ଶକୁନ୍ତଳା, ସୂର୍ଯ୍ୟଶତକ, ଶିଶୁପାଳ ବଧ ।

ଅନ୍ୟାନ୍ୟ ଲେଖକଙ୍କ ସମୟପରି ଏହାଙ୍କର ସମୟ ନିରୂପଣରେ ବିଶେଷ ଅସୁବିଧା ଓ ସନ୍ଦେହର କବଳରେ ପଡିବାକୁ ହୁଏ ନାହିଁ । ପରବର୍ତ୍ତୀ ଲେଖକ ରାଜଶେଖର କହିଛନ୍ତି *ଆନନ୍ଦ-ବର୍ଦ୍ଧନ ଅବନ୍ତିବର୍ମାଙ୍କ ସଭାରେ ବଡ ଖ୍ୟାତିଲାଭ କରିଥିଲେ । ଐତିହାସିକମାନଙ୍କ ସିଦ୍ଧାନ୍ତ ଅନୁସାରେ ଅବନ୍ତିବର୍ମା ଖ୍ରୀ: । ୫୦—୮୮୩ ପର୍ଯ୍ୟନ୍ତ ଶାସନ କରିଥିଲେ । ତେଣୁ ଧ୍ୱନ୍ୟାଲୋକକାର ଯେ ନବମ ଶତାବ୍ଦୀର ଉତ୍ତରାର୍ଦ୍ଧର ଲେଖକ ଏହା ନିଃସନ୍ଦେହ ।

ଧ୍ୱନ୍ୟାଲୋକର ଅନ୍ୟ ଏକ ଗ୍ରନ୍ଥଗତସମସ୍ୟା ବହୁବର୍ଷ ଧରି ଅନୁସନ୍ଧିତ୍ସୁମାନଙ୍କର ଦୃଷ୍ଟି ଆକର୍ଷଣ କରି ଆସିଛି । ବିଷୟବସ୍ତୁର

---

* ମୁକ୍ତାକଣଃ ଶିବସ୍ୱାମୀ କବିରାନନ୍ଦବର୍ଦ୍ଧନଃ ପ୍ରଥାଂ ରତ୍ନାକରଶ୍ଚାଗାତ୍ ସାମ୍ରାଜ୍ୟେଽବନ୍ତିବର୍ମଣଃ ।

ଉପସ୍ଥାପନ ଓ ଆଲୋଚନା କମ ଦୃଷ୍ଟିରୁ ଦେଖିଲେ ଜଣାଯିବ, ଏହା କାରିକା, ବୃତ୍ତି ଓ ଉଦାହରଣ ଭେଦରେ ତିନି ଭାଗରେ ବିଭକ୍ତ ହୋଇପାରେ । ଅନେକ ପଣ୍ଡିତ ଏହି ମତ ପୋଷଣ କରନ୍ତି ଯେ, ଧ୍ୱନ୍ୟାଲୋକର କାରିକା ଓ ବୃତ୍ତି—ଏ ଦୁଇ କଥା ଜଣେ ଲୋକର ଲେଖଣୀ ନିଃସୃତ ନୁହେ । ଏ ସମ୍ପର୍କରେ ଯେଉଁ ସମାଲୋଚନା ଓ ପ୍ରତିସମାଲୋଚନା ହୋଇଯାଇଛି, କେବଳ ତାର ଅବତାରଣା କଲେ ଅଙ୍ଗ ଗୋଟିଏ ପ୍ରକାଣ୍ଡ ଗ୍ରନ୍ଥ ହେବ । ତେଣୁ ଗଭୀର ତର୍କର ସାଗରର ନିମ୍ନସ୍ତରକୁ ନ ଯାଇ କେବଳ ଏତିକି କହିଲେ ବୋଧ-ହୁଏ ଯଥେଷ୍ଟ ହେବ ଯେ, ବୃତ୍ତି ଓ କାରିକାର ଲେଖକ ଦୁଇଜଣ ନୁହନ୍ତି, ଜଣେ ମାତ୍ର—ଏ ସିଦ୍ଧାନ୍ତ ବର୍ତ୍ତମାନ ସର୍ବସାଧାରଣରେ ଗୃହୀତ ହୋଇଛି ।

ଟୀକା—

ଅଭିନବ ଗୁପ୍ତ ଧ୍ୱନ୍ୟାଲୋକର ସୁପ୍ରସିଦ୍ଧ ଟୀକାକାର । ଏ ଦଶମ ଶତାବ୍ଦୀର ଅନ୍ତିମ ଓ ଏକାଦଶ ଶତାବ୍ଦୀର ପ୍ରଥମ ଭାଗରେ ଜୀବିତ ଥିଲେ । ଏହାଙ୍କ ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟାନ ବଳରେ ଅଙ୍ଗ ସୁଦ୍ଧା ଧ୍ୱନ୍ୟାଲୋକର ଧ୍ୱନ୍ୟାତ୍ମବାଦ ଅଳଂକାରିକ ଜଗତରେ ଏକ ଅଜେୟ ଦୁର୍ଗରୂପେ ଦଣ୍ଡାୟମାନ ରହିଛି । ଅଳଂକାର ଶାସ୍ତ୍ରର ପାଠକ ମାତ୍ରେ ସ୍ୱୀକାର କରିବେ, ଅଭିନବ ଗୁପ୍ତ ମୌଳିକ ଗ୍ରନ୍ଥ ଲେଖି ନ ଥିଲେ ମଧ୍ୟ ଧ୍ୱନ୍ୟାଲୋକ ଉପରେ ଯେଉଁ 'ଲୋଚନ' ନାମ୍ନୀ ଟୀକା ଲେଖିଛନ୍ତି, ତଦ୍ୱାରା ସେ ଜଣେ ବରେଣ୍ୟ ଆଳଂକାରି-କର ସମ୍ମାନ ଭାଜନ ହୋଇଛନ୍ତି । 'ଲୋଚନ'କାରଙ୍କ କେହି ଜଣେ ପୂର୍ବ ପୁରୁଷ ଧ୍ୱନ୍ୟାଲୋକ ଉପରେ ଚନ୍ଦ୍ରିକା ନାମରେ ଅନ୍ୟ ଏକ ଟୀକା ଲେଖିଥିଲେ । ଅଭିନବ ଗୁପ୍ତ କିନ୍ତୁ ପିତୃପୁରୁଷଙ୍କ ଟୀକାରେ ସନ୍ତୁଷ୍ଟ ନ ହୋଇ ନିଜେ ଏକ ଟୀକା ପ୍ରଣୟନ କଲେ ଏବଂ ବହୁ

ସ୍ଥଳରେ ଚନ୍ଦ୍ରିକା ଟୀକାର ଦୋଷ ପ୍ରଦର୍ଶନ ପୂର୍ବକ କଟୁ ସମାଲୋଚନା କରିବାକୁ ପଶ୍ଚାତ୍‌ପଦ ହୋଇନାହାନ୍ତି । ସେ ଜଣେ ବିଚକ୍ଷଣ ଅଳଂକାରିକ, କବି ଓ ଦାର୍ଶନିକ ଥିଲେ । ଏ ପର୍ଯ୍ୟନ୍ତ ତାଙ୍କ ବିଷୟରେ ଅନୁସନ୍ଧିତ୍ସୁମାନେ ଯେଉଁସବୁ ତଥ୍ୟ ସଂଗ୍ରହ କରିଛନ୍ତି, ତହିଁରୁ ନିଃସନ୍ଦେହରୂପରେ ଜଣାଯାଏ ଯେ, ସେ ଅନ୍ୟୁନ କୋଡ଼ିଏ ଖଣ୍ଡ ପର୍ଯ୍ୟନ୍ତ କ୍ଷୁଦ୍ର ବିଶାଳ ଗ୍ରନ୍ଥ ରଚନା କରିଥିଲେ । ତାଙ୍କର ଏ ସବୁ ଗ୍ରନ୍ଥ ମଧ୍ୟରେ କାଶ୍ମୀର ଶୈବଧର୍ମ, ପ୍ରତ୍ୟଭିଜ୍ଞାନବିମର୍ଶିନୀ, ଭଗବତ୍ ଗୀତାର ଟୀକା, ପରାତ୍ରିଂଶିକା ବିବରଣ, କାବ୍ୟକୌତୁକ ଉପରେ ଟୀକା, ଭୈରବ ସ୍ତୋତ୍ରର ନାମ ଉଲ୍ଲେଖ ଯୋଗ୍ୟ । ପ୍ରତ୍ୟଭିଜ୍ଞାନ ବିମର୍ଶିନୀରେ ସେ ଉକ୍ତ ଗ୍ରନ୍ଥର ରଚନାକାଳ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି, ଯାହାକି ଖ୍ରୀ ୧୦୧୫ । ତାଙ୍କର ଲୋଚନ ଟୀକା ତିଭିନ୍ନ ନାମରେ ପରିଚିତ—ସହୃଦୟାଲୋକ-ଲୋଚନ, ଧ୍ୱନ୍ୟାଲୋକ ଲୋଚନ, କାବ୍ୟାଲୋକ ଲୋଚନ । ଟୀକାରେ ସେ ଯେଉଁ ସବୁ ତାଙ୍କ ପୂର୍ବବର୍ତ୍ତୀ ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ନାମୋଲ୍ଲେଖ କରିଛନ୍ତି, ସେ ମଧ୍ୟରେ ନିମ୍ନଲିଖିତ ନାମଗୁଡ଼ିକ ଉଲ୍ଲେଖ କରିଯାଇ ପାରେ,—ହୃଦୟଦର୍ପଣ, ମନୋରଥ, ଭଗୁରି, ସ୍ୱପ୍ନବାସବଦତ୍ତା, ବାମନ, ଯଶୋବର୍ମା, ବସ୍ତୁରାଜ ଚରିତ, ପ୍ରଭାକର ଦର୍ଶନ, ଭଟ୍ଟତୌତ, ଦଣ୍ଡୀ, ଚନ୍ଦ୍ରାଲୋକ, ତାପସବତ୍ସରାଜ, ଚନ୍ଦ୍ରିକାକାର, ଭଟ୍ଟତୌତ, କୁମାରିଲଭଟ୍ଟ, ଭଟ୍ଟଜୟନ୍ତଙ୍କ ପ୍ରଣୀତ କାଦମ୍ବରୀ କଥାସାର, ଇନ୍ଦୁରାଜ, କାବ୍ୟକୌତୁକ ଓ ଉତ୍ପଳ ।

ଲୋଚନ ଉପରେ ପରମେଶ୍ୱରାଚାର୍ଯ୍ୟ ଲୋଚନ ବ୍ୟାଖ୍ୟା କୌମୁଦୀ ନାମକ ଟୀକା ଲେଖିଥିଲେ । ଦାଶରଥି ନାମକ ଜଣେ ପଣ୍ଡିତ ଲୋଚନର ଅନ୍ୟ ଏକ ଟୀକା ଲେଖିଥିବା କଥା

ଜଣାଯାଇଛନ୍ତି । ଉତ୍କଳର ବିଖ୍ୟାତ ପଣ୍ଡିତ ମଧୁସୂଦନ ମିଶ୍ର ମଧ୍ୟ ଏହି ବିସ୍ତୃତ ଟୀକା ଧ୍ୱନ୍ୟାଲୋକ ଉପରେ ଲେଖିଯାଇଛନ୍ତି ।

## କାବ୍ୟ ମୀମାଂସା

କାବ୍ୟ ମୀମାଂସାର ଲେଖକ ରାଜଶେଖର ଏକାଧାରରେ ଜଣେ ଅଳଂକାରିକ, ନାଟ୍ୟକାର, କବି ଓ ଶାସ୍ତ୍ରଜ୍ଞ ଥିଲେ । ଉକ୍ତ ଗ୍ରନ୍ଥରେ ଯେଉଁ ସବୁ ବିଷୟର ପାଣ୍ଡିତ୍ୟ ପୂର୍ଣ୍ଣ ବିଚାର ହୋଇଛି, ସେଥିରୁ ତାଙ୍କର ପାଣ୍ଡିତ୍ୟର ବହୁଳତା ଜଣାଯାଏ । ତାଙ୍କ ଲିଖିତ ଗ୍ରନ୍ଥଗତ ବିଷୟ ସୂଚୀରୁ ବେଶ ଜଣାଯିବ, କେଉଁ କେଉଁ ଦିଗରେ ରାଜଶେଖର ନିଜର ବିଶିଷ୍ଟତା ଦେଖାଇ ପାରିଛନ୍ତି । ଗ୍ରନ୍ଥଟି ଅଠର ଗୋଟି ପରିଚ୍ଛେଦରେ ବିଭକ୍ତ :—

ପ୍ରଥମ ପରିଚ୍ଛେଦ—ଶାସ୍ତ୍ର ସଂଗ୍ରହର ସ୍ୱରୂପ—ବ୍ରହ୍ମାଙ୍କର ଆଦିଗୁରୁତ୍ୱ, କାବ୍ୟ ମୀମାଂସାଗତ ଅଠରଗୋଟି ଅଧ୍ୟାୟର ବିଷୟ ଉପରେ ଅଠର ଜଣ ଗୁରୁଙ୍କ ଉପଦେଶ ଉପରେ ପ୍ରତିଷ୍ଠିତ ।

ଦ୍ୱିତୀୟ ପରିଚ୍ଛେଦ—ଶାସ୍ତ୍ର ନିର୍ଦ୍ଦେଶ—ଶାସ୍ତ୍ର ଓ କାବ୍ୟଶାସ୍ତ୍ରର ପୌରୁଷେୟ ଅପୌରୁଷେୟ ଭେଦ—ପୁରାଣ ସ୍ମୃତି ପ୍ରଭୃତିର ଆସନ ନିରୂପଣ ।

ତୃତୀୟ ପରିଚ୍ଛେଦ—ସରସ୍ୱତୀଙ୍କଠାରୁ କାବ୍ୟପୁରୁଷର ଜନ୍ମ—ବତ୍ସଗୁଲ୍ମ—ନଗରରେ ( ଯଥାସମ୍ଭବ କାଶ୍ମୀରର ଏକ ବିଖ୍ୟାତ ବିଦ୍ୟାପୀଠ ) ସାହିତ୍ୟବିଦ୍ୟା—ବଧୂ ସହିତ କାବ୍ୟପୁରୁଷର ବିବାହ ।

ଚତୁର୍ଥ ପରିଚ୍ଛେଦ—ପଦ ଓ ବାକ୍ୟ ବିଚାର—କବିର ଯୋଗ୍ୟତା—ଓ ସାଧନ, ପ୍ରତିଭା, ପାଣ୍ଡିତ୍ୟ ପ୍ରଭୃତିର ବିଚାର ।

ପଞ୍ଚମ ପରିଚ୍ଛେଦ—କାବ୍ୟ ଓ ପାକକଳ୍ପ—ବ୍ୟୁତ୍ପତ୍ତିର ଅର୍ଥ—ଶାସ୍ତ୍ର କବି ଓ କାବ୍ୟ କବି—କବିର ଦଶ ଅବସ୍ଥା ।

ଷଷ୍ଠ ପରିଚ୍ଛେଦ—ପଦବାକ୍ୟ ବିବେକ—ଶବ୍ଦର ବୃତ୍ତି ପଞ୍ଚକ—ବାକ୍ୟର ଲକ୍ଷଣ—ଦଶବିଧ ବାକ୍ୟର ବିଚାର— ।

ସପ୍ତମ ପରିଚ୍ଛେଦ—ପାଠ ପ୍ରତିଷ୍ଠା—ଦେବତା ପ୍ରଭୃତିଙ୍କ ଭାଷା—ରୀତି ନିର୍ଣ୍ଣୟର ବିଚାର—କାକୁର ଭେଦ ଓ ଉପବିଭାଗ—ଭାରତୀୟମାନଙ୍କର ବିଭିନ୍ନ ଉଚ୍ଚାରଣ-ଭଙ୍ଗୀ ଓ ଭାଷାଗତ ପାର୍ଥକ୍ୟ ।

ଅଷ୍ଟମ ପରିଚ୍ଛେଦ—କାବ୍ୟାର୍ଥ ଯୋନି—କାବ୍ୟ କଥାବସ୍ତୁର ମୂଳ—ଶ୍ରୁତି, ସ୍ମୃତି, ଇତିହାସ, ପୁରାଣ, ପ୍ରମାଣ ବିଦ୍ୟା, ସମୟ ବିଦ୍ୟା; ଅର୍ଥଶାସ୍ତ୍ର, ନାଟ୍ୟଶାସ୍ତ୍ର, କାମଶାସ୍ତ୍ର, ଲୋକ ବିରଚନା ଓ ପ୍ରକୀର୍ଣ୍ଣକ ପ୍ରଭୃତି ଭେଦରେ ବାର ପ୍ରକାର ।

ନବମ ପରିଚ୍ଛେଦ—ଅର୍ଥବ୍ୟାପ୍ତି, ବର୍ଣ୍ଣନୀୟ ବସ୍ତୁ ବିଚାର,—ଦିବ୍ୟ, ଦିବ୍ୟମାନୁଷ, ମାନୁଷ, ପାତାଳୀୟ, ମର୍ତ୍ତ୍ୟ ପାତାଳୀୟ ଇତ୍ୟାଦି ଭେଦ—ଗଦ୍ୟ ପଦ୍ୟ ରଚନା ନିର୍ବିଶେଷରେ ଉପଭୋଗର ଓ ଉପଯୁକ୍ତତାର ସାଧନରୂପେ ରସର ଉତ୍କର୍ଷ ଉର୍ଦ୍ଧ୍ୱରେ ମୁଖ୍ୟ ।

ଦଶମ ପରିଚ୍ଛେଦ—କବି ଚର୍ଯ୍ୟା ଏବଂ ରାଜଚର୍ଯ୍ୟା । କାବ୍ୟ ବିଦ୍ୟା—ନାମଧାତୁ ପାରାୟଣା—ଅଭିଧାନ କୋଷ ଏବଂ ଅଲଂକାର ଚର୍ଚ୍ଚା—ଉପବିଦ୍ୟା ଏବଂ ଚଉଷଠି କଳା—ଦେଶବାର୍ତ୍ତା—ବିଦଗ୍ଧବାଦ—ଲୋକଯାତ୍ରା— ବିଦ୍ୱଦ୍‌ଗୋଷ୍ଠୀ—ଏ

ସବୁ କାବ୍ୟର ଜନନୀ ସ୍ୱରୂପ—କବିର ଶାଶ୍ୱତିକ ସତ୍ୟତା, ଚିନ୍ତା ଓ ବଚନ ଉପରେ ହେବା ଆବଶ୍ୟକ, କବିର ବାସସ୍ଥଳ ଓ ତାହାର ପରିପାର୍ଶ୍ୱ ସୁନ୍ଦର ହେବା ଦରକାର, କବିର ସଙ୍ଗୀ ଓ ସହକାରୀ ସମସ୍ତ ଉପାଦାନ ଉପର ହେବା ଉଚିତ, ସେ ଧନକୁ ଆଠସ୍ତଗରେ ବିଭକ୍ତ କରି ବିଭିନ୍ନ ସମୟରେ କି କି କାର୍ଯ୍ୟରେ ବ୍ୟାପୃତ ରହିବାକୁ ହେବ—ଏ ସବୁର ଗମ୍ଭୀର ଅନୁଭୂତି ମୂଳକ ବିସ୍ତୃତ ବିଚାର—ନାଟ୍ୟମାନଙ୍କର କବିତା ରଚନା, କବିମାନଙ୍କର ଉତ୍କର୍ଷ ନିରୂପଣ ପାଇଁ ରାଜାମାନେ ଉପରେ କାବ୍ୟ ତଥା କବି-ପରୀକ୍ଷାସଦନ ନିର୍ମାଣ କରାଇବାକୁ ହେବ—ବଡ଼ ବଡ଼ ସହରମାନଙ୍କରେ ସାହିତ୍ୟ-ପରିଷଦ କରି ଗଢ଼ାଯିବା ଉଚିତ ଏବଂ କିରୂପେ କବିମାନଙ୍କର ପରୀକ୍ଷା ଓ ପ୍ରଶଂସା କରିବାକୁ ହେବ ତତ୍‌ସମ୍ପର୍କୀୟ ନାନାକଥାର ବିସ୍ତାର । ଏକାଦଶଠାରୁ ତ୍ରୟୋଦଶ ପରିଚ୍ଛେଦ—ପୂର୍ବବର୍ତ୍ତୀ କବିଙ୍କର ଭାଷା ଓ ଭାବ ଜଣେ କବି କେତେଦୂର ପର୍ଯ୍ୟନ୍ତ ଅନୁକରଣ କରିପାରେ, ଇତ୍ୟାଦି 'ବସ୍ତୁ ଚୌର' ଆଲୋଚନା ।

ଚତୁର୍ଦ୍ଦଶଠାରୁ ଷୋଡ଼ଶ ପରିଚ୍ଛେଦ—କବିସମୟ ପ୍ରସିଦ୍ଧି—କେଉଁ ସ୍ଥାନରେ ଓ କେଉଁ ଋତୁରେ କି କି ବସ୍ତୁର ବର୍ଣ୍ଣନା ତଥା କେଉଁ ପଦାର୍ଥ ଉପରେ କାହାର ଆରୋପ କରଣୀୟ ବୋଲି କବି ପରମ୍ପରା ଅନୁମୋଦନ କରିଆସିଛନ୍ତି, ଇତ୍ୟାଦି (ଯେପରି ନଦୀରେ ପଦ୍ମଫୁଲ ଫୁଟିବା ଓ ପାପ ଉପରେ ମାଳିନ୍ୟର ଆରୋପ) ।

ସପ୍ତଦଶ ପରିଚ୍ଛେଦ—ଦେଶ ବିଭାଗ—ମୋଟା ମୋଟି ଭାରତର ଭୌଗୋଳିକ ସ୍ଥାନର ବିବରଣୀ—ଭିନ୍ନ ଅଧିବାସୀଙ୍କ ବର୍ଣ୍ଣ ଇତ୍ୟାଦି ।

ଅଷ୍ଟାଦଶ ପରିଚ୍ଛେଦ—ବିଭିନ୍ନ ଋତୁର ତଥା ଭିନ୍ନ ଭିନ୍ନ ବର୍ଣ୍ଣନୀୟ ବସ୍ତୁର ଉପଯୋଗୀ ପଶୁ, ପକ୍ଷୀ, ଫୁଲ, ପବନ ପ୍ରଭୃତିର ସ୍ୱରୂପ କଥନ ।

କାବ୍ୟ ମୀମାଂସା ଗ୍ରନ୍ଥଦେଲେ ଏ ପର୍ଯ୍ୟନ୍ତ ଅନ୍ୟ କୌଣସି ଗ୍ରନ୍ଥ ଲକ୍ଷିତ ଥିବାର ଜଣାଯାଇ ନାହିଁ, ଯେଉଁଥିରେ ଏତେ ମୌଳିକ ବିଷୟ ଅବତାରଣା ହୋଇଛି । ବିଶେଷରେ ଦଶମ ପରିଚ୍ଛେଦର ପରିଶୀଳନ କଲେ ଜଣାଯାଏ, କବିଙ୍କର ଦୂରଦୃଷ୍ଟି ଓ ପାଣ୍ଡିତ୍ୟ ଅସୀମ ଥିଲା । ରାଜାମାନଙ୍କର କବି ପରୀକ୍ଷା ସଦନ ଆଧୁନିକ ଯୁଗର ନୋବେଲ ପୁରସ୍କାର ବିତରଣ ସଙ୍ଗେ ଓ ପରିଷଦଗଠନ ଆଜିକାଲିର ଯେ କୌଣସି ଉନ୍ନତ ଦେଶର ସାହିତ୍ୟ-ସଂଘ ସଙ୍ଗେ ସୁନ୍ଦ ଯୁକ୍ତିର ସହିତ ତୁଳିତ ହୋଇପାରେ । ପୁଣି ରାଜଶେଖରଙ୍କ ଦିବ୍ୟ ଦୃଷ୍ଟିରେ କବିର ଅପଘନ ମନ ଓ ବଚନ ସବୁ ପବିତ୍ର । ବାସ୍ତବରେ ଅଜ ଶତ୍ରୁ କଲେ ପ୍ରମୂର୍ତ୍ତିଭୂତ ହେବାକୁ ହୁଏ, ଏହିପରି ଅସଳ ସମାଜରେ କି ଭାବରେ ଅବସ୍ଥିତ ବୋଲି ଏତେ ଶହ ବର୍ଷ ତଳେ ଜଣେ ଭାରତୀୟର ମସ୍ତିଷ୍କରୁ ଉଦ୍‌ଭୂତ ହୋଇଥିଲା । କେବଳ ବିଂଶ ଶତାବ୍ଦୀରେ ନୁହେଁ, ବୋଧହୁଏ ପରବର୍ତ୍ତୀ ଶତାବ୍ଦୀମାନଙ୍କରେ ମଧ୍ୟ କବିର ସ୍ଥାନ ସମ୍ପର୍କରେ ରାଜଶେଖରଙ୍କ ମତ ଅପ୍ରବାଦ୍ୟ ଓ ଅସମାଲୋଚ୍ୟ ରୂପେ ଗୃହୀତ ହେବ । ବର୍ତ୍ତମାନ ଯେଉଁ ମୁଦ୍ରିତ ଗ୍ରନ୍ଥ ମିଳୁଛି, ତହିଁରେ କବିଙ୍କ ମୂଳଗ୍ରନ୍ଥର ସକଳ ଅଂଶ ନାହିଁ । ଅଳଂକାର ଶେଖର ପ୍ରଭୃତି କେତେକ ଅଳଂକାର ଗ୍ରନ୍ଥରେ ରାଜଶେଖରଙ୍କ କାବ୍ୟ-ମୀମାଂସାରୁ ଏପରି ବହୁ ଅଂଶ ଉଦ୍ଧୃତ ହୋଇଛି, ଯାହା ବର୍ତ୍ତମାନ ମୁଦ୍ରିତ ଗ୍ରନ୍ଥରେ ନାହିଁ । ଉଦାହରଣ ସ୍ୱରୂପ ଏଠାରେ ଉଲ୍ଲେଖ କରାଯାଇ ପାରେ, ନିମ୍ନଲିଖିତ ଅଂଶଟି

ଅଳଂକାର ଶେଖରରେ ମଣ୍ଡଶେଖରଙ୍କ ଟୀକଣୀ ବୋଲି ସ୍ପଷ୍ଟ ଲେଖା ଥିବା ସ୍ଥଳେ ପ୍ରାପ୍ତ ମୁଦ୍ରିତ ଗ୍ରନ୍ଥରେ ନାହିଁ ।—ଅଳଂକାର ଶେଖରକଣ୍ଠଂ ସର୍ବସ୍ୱଂ କାବ୍ୟ ସଂପଦାମ୍ । ଉପମା କବିବଂଶସ୍ୟ ମାତୈ-ବୈଭି ମଣ୍ଡମଂମ ( ଅ: ଶେ —ଚତୁର୍ଥ ରତ୍ନର ଦ୍ୱିତୀୟ ମରୀଚି ) ରାଜଶେଖର ସ୍ୱୀୟ ପୂର୍ବବର୍ତ୍ତୀ ବହୁଗ୍ରନ୍ଥରୁ ଅଂଶମାନ ଉଦ୍ଧାର କରିଛନ୍ତି । ସେ ଉଲ୍ଲେଖ କରିଥିବା ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ନାମ ମଧ୍ୟରୁ କେତୋଟି ତଳେ ଦିଆଗଲା—ଅବନ୍ତୀ ସୁନ୍ଦରୀ [ ନିଜର ], ଆନନ୍ଦ (ଧ୍ୱନ୍ୟାଲୋକ ଲେଖକ ଆନନ୍ଦ ବର୍ଦ୍ଧନ), ଅପରାଜିତ, ଉଦ୍ଭଟ, କାଳିଦାସ, ଦ୍ରୌହିଣୀ, ଭରତ, ମଙ୍ଗଳ, ରୁଦ୍ରଟ, ବାକ୍‌ପତିରାଜ, ବାମନ, ଶ୍ୟାମ ଦେବ ଓ ସୁରାନନ୍ଦ ।

ରାଜଶେଖରଙ୍କ ଭାଷାରେ 'ମହାରାଷ୍ଟ୍ର ଚୂଡ଼ାମଣି' ଅକାଳ ଜଳଦଙ୍କର ସେ ଚତୁର୍ଥ ବଂଶଧର । ତାଙ୍କ ପିତାଙ୍କ ନାମ ଦୁର୍ଦ୍ଦୁକ ଓ ମାତାଙ୍କ ନାମ ଶୀଳବତୀ । ସ୍ୱୀୟ ବାଳ ରାମାୟଣରେ ସେ ନିଜକୁ ସ୍ୱୟଂ ବାଲ୍ମୀକି ରୂପେ ବର୍ଣ୍ଣନା କରିଛନ୍ତି । ସେ ରଘୁବଂଶୀୟ ରଘ ମହାରାଜଙ୍କ ବଂଶର ରଜା ମହେନ୍ଦ୍ର ପାଳଙ୍କ ଗୁରୁ ଥିଲେ ଏବଂ ତାଙ୍କ ରାଣୀ ଅବନ୍ତୀ ସୁନ୍ଦରୀ ଇଚ୍ଛା କରିବାରୁ କବି କେବଳ ପ୍ରାକୃତ ଭାଷାରେ ( ଏଥିରେ ସଂସ୍କୃତ ଭାଷା ଆଦୌ ନାହିଁ ) ପ୍ରସିଦ୍ଧ କର୍ପୂରମଞ୍ଜରୀ ନାଟକ ଲେଖିଥିଲେ । ରାଜଶେଖର ନେତେଜଣ ରାଜାଙ୍କର ସାହିତ୍ୟିକ ସମାଦୃତ ତଥା ଉତ୍ତମାନଙ୍କର ରାଜସଭାର ପରୀକ୍ଷା ବିଷୟକ ବିବରଣୀ ଦେଇଛନ୍ତି । ତାଙ୍କ ଲେଖାରୁ ଜଣାଯାଏ ମଗଧର ଶିଶୁନାଗ, ଶୂରସେନର କୁବିନ୍ଦ, କୁନ୍ତଳର ସାତ ବାହନ ଓ ଉଜ୍ଜୟିନୀର ସାହସାଙ୍କ ବଡ଼ ସାହିତ୍ୟ ପ୍ରିୟ ଥିଲେ । ଏମାନେ କବିମାନଙ୍କ ପାଇଁ ଏକ ନିୟମ କରିଥିଲେ ଯେ ଶ୍ରୁତିକଟୁ ହେବା ଅକ୍ଷର ସେମାନେ କାବ୍ୟରେ ବ୍ୟବହାର କରିବେ ନାହିଁ ତ

ସଂସ୍କୃତ ଓ ପ୍ରାକୃତର ଖେଚେଡ଼ୀ କରିବେ ନାହିଁ । ଅଧିକନ୍ତୁ ମଧ୍ୟ କାବ୍ୟମୀମାଂସାରେ କାଳିଦାସ, ମେଣ୍ଠ, ଅମର, ଭାରବି, ଚନ୍ଦ୍ରଗୁପ୍ତ ଓ ଚନ୍ଦ୍ରଗୁପ୍ତ ଏବଂ ପାଟଳୀପୁତ୍ରରେ ଉପବର୍ଷ, ପାଣିନି, ପିଙ୍ଗଳ, ବ୍ୟାଡ଼ି, ବରରୁଚି ଓ ପତଞ୍ଜଳି ପରୀକ୍ଷିତ ହୋଇଥିଲେ । ଏସବୁ ଲେଖିବାର ଐତିହାସିକ ଭିତ୍ତି ଯାହା ଥାଉ ପଛେ ଉଜ୍ଜୟିନୀକୁ କାବ୍ୟ ଚର୍ଚ୍ଚାର ଏବଂ ପାଟଳୀପୁତ୍ରକୁ ବ୍ୟାକରଣ ଚର୍ଚ୍ଚାର ପ୍ରଧାନ କେନ୍ଦ୍ର ସ୍ଥଳୀ ରୂପେ ନିର୍ଦ୍ଦେଶ କରିବା ତାଙ୍କର ମୁଖ୍ୟ ଲକ୍ଷ୍ୟ । କାବ୍ୟମୀମାଂସା ବ୍ୟତୀତ ସେ ନିମ୍ନଲିଖିତ ଗ୍ରନ୍ଥଗୋଟି ନାଟକ ରଚନା କରିଥିଲେ ।—ବାଳରାମାୟଣ, ବାଳଭାରତ ( ବା ପ୍ରଚଣ୍ଡ ପାଣ୍ଡବ ) କର୍ପୂର ମଞ୍ଜରୀ, ବିଦ୍ଧ ଶାଳଭଞ୍ଜିକା । ହର ବିଳାସ ତାଙ୍କର ଗୋଟିଏ ମହାକାବ୍ୟ ।

ରାଜଶେଖରଙ୍କ କଳ୍ପନା ଶକ୍ତି ଅସାଧାରଣ ଥିଲା । କର୍ପୂର ମଞ୍ଜରୀ ନାଟକରେ ସେ କେତେଗୁଡ଼ିଏ କଳ୍ପିତ ସ୍ତ୍ରୀ ନାମ ଦେଇଛନ୍ତି, ଯାହା, ବାସ୍ତବରେ ରସାଳ ଓ ପୁଷ୍କଳ କବି ହୃଦୟର ପରିଚୟ ଦିଏ, ଯଥା, କୁନ୍ଦ ମାଳା, ଚନ୍ଦନମାଳା, କୁବଳୟମାଳା, କାଞ୍ଚନମାଳା, ବକୁଳମାଳା, ମଙ୍ଗଳମାଳା, ଅନଙ୍ଗ କେଳି, ପୁଷ୍କର କେଳି, ମଦନବତୀ, କେଳିବତୀ, କଲ୍ଲୋଳବତୀ, ତରଙ୍ଗ ବତୀ, ଅନଙ୍ଗ ବତୀ ।

ରାଜଶେଖରଙ୍କ ସମୟ ନିରୂପଣ ଗୋଟାଏ ବହୁବିବାଦାତ୍ମକ ସମସ୍ୟା । ଏ ସମ୍ପର୍କରେ ନାନା ପଣ୍ଡିତଙ୍କର ନାନା ମତ ଦେଖାଯାଏ । ଅନୁସନ୍ଧିତ୍ସୁ ଭଣ୍ଡାରକରଙ୍କ ମତରେ ସେ ହେଉଛନ୍ତି ଦଶମ ଶତାବ୍ଦୀର ଲୋକ । ଅଧ୍ୟାପକ Weber ଙ୍କ ମତରେ ଏକମତ । ଅଧ୍ୟାପକ ଓ୍ୱିଲ୍‌ସନ୍ କହନ୍ତି, ଏକାଦଶ ଶତାବ୍ଦୀର ଶେଷ ଓ ଦ୍ୱାଦଶ

ଶତାବ୍ଦୀର ପ୍ରଥମ ଅର୍ଦ୍ଧରେ ସେ ଜୀବିତ ଥିଲେ । ଅଧ୍ୟାପକ ମେକ୍‌ସ୍‌ମୁଲର
ବ ଲସମ.ସ୍ୟଶର ବସ୍ତୁର ଭଟ୍ଟ ଲେଖକଙ୍କୁ ଚତୁର୍ଦ୍ଦଶ ଶତାବ୍ଦୀରେ
ସ୍ଥାପିତ କରିଛନ୍ତି । କିନ୍ତୁ ମହାମହୋପାଧ୍ୟାୟ ପଣ୍ଡିତ ଦୁର୍ଗା ପ୍ରସାଦ,
ମାଧବ କୃତ ଶଂକର ବିଜୟ ଠାରୁ ଆରମ୍ଭ କରି ଆଚାର୍ଯ୍ୟ ଭଣ୍ଡାର-
କର ରିପୋର୍ଟ ପର୍ଯ୍ୟନ୍ତ ବିଂଶାଧିକ ଗ୍ରନ୍ଥରୁ ମତ ଓ ପ୍ରମାଣ ସଂଗ୍ରହ
କରି ସ୍ଥିର କରିଛନ୍ତି ଯେ, ରାଜଶେଖର ଖ୍ରୀ ୮୮୪ ଠାରୁ ୯୫୯—
୭୫ ବର୍ଷ ମଧ୍ୟରେ ଥିଲେ । ଅନୁଚ୍ଛେଦସ୍ଥ କାଟେଲଙ୍କ ମତରେ ସେ
ଧ୍ୱନ୍ୟାଲୋକରୁ ଅଂଶ ଉଦ୍ଧାର କରିଥିବାରୁ ଏବଂ ଯଶସ୍ତିଳକ
(ଖ୍ରୀ ୯୫୯—୬୦) ରେ ଓ ତିଲକ ମଞ୍ଜରୀ (ଖ୍ରୀ:—ପ୍ରାୟ ୧୦୦୦) ରେ
ସୂଚିତ ହୋଇଥିବାରୁ ଦଶମ ଶତାବ୍ଦୀର ପୂର୍ବାର୍ଦ୍ଧରେ ଥିବା
ସମୀଚୀନ ।

## ଅଭିଧାବୃତ୍ତିମାତୃକା

ମୁକୁଳଭଟ୍ଟ ଏହାର ପ୍ରଣେତା । ଗ୍ରନ୍ଥଟି ନିତାନ୍ତ କ୍ଷୁଦ୍ର ।
ଏଥିରେ ଅନୁଷ୍ଟୁପ୍ ଛନ୍ଦର ମୋଟେ ୧୫ ଟି ଶ୍ଳୋକ (କାରିକା)
ଅଛି । ଲେଖକ ଭଟ୍ଟକଲ୍ଲଟଙ୍କ ପୁଅ ଓ ପ୍ରତିହାରେନ୍ଦୁ ରାଜଙ୍କ ଗୁରୁ ।
ଭଟ୍ଟକଲ୍ଲଟ ଅବନ୍ତୀ ବର୍ମାଙ୍କ ୮୫୫—୮୮୩ ସମୟରେ ଥିବାରୁ
ମୁକୁଳଙ୍କ ସମୟ ନବମ ଶତାବ୍ଦୀର ଶେଷଭାଗ ଓ ଦଶମ
ଶତାବ୍ଦୀର ପ୍ରାରମ୍ଭ ବୋଲି ନିରୂପଣ କରାଯାଇ ପାରେ । ଗ୍ରନ୍ଥରେ
ଆଲୋଚିତ ହୋଇଥିବା ବିଷୟର (କାରିକା ଓ ତାହାର ବୃତ୍ତିସହ)
ଏକ ସୂଚନା ତଳେ ଦିଆଗଲା ।

ମୁଖ୍ୟାର୍ଥ ବିଭାଗ-ଲକ୍ଷଣାଭେଦ—ଶୁଦ୍ଧା ଉପାଦାନ-ଲକ୍ଷଣା—
ଶୁଦ୍ଧାଲକ୍ଷଣ ଲକ୍ଷଣା—ଉପଚାର ମିଶ୍ର ଲକ୍ଷଣାଭେଦ ଇତ୍ୟାଦି ।

ମୁକୁଳଭଟ୍ଟ କାଶ୍ମୀର ଦେଶୀୟ ଥିବା ଅନୁମିତ ହୁଏ । ଗ୍ରନ୍ଥଟି କ୍ଷୁଦ୍ର ହେଲେ ମଧ୍ୟ ଲକ୍ଷଣା—ଶକ୍ତିର ବଡ଼ ସୁନ୍ଦର ତାଙ୍କ ଦ୍ୱାରା ହୋଇଛି । ଅନ୍ୟଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ମଧ୍ୟରେ ସେ ନିମ୍ନଲିଖିତ ନାମଗୁଡ଼ିକ ଉଲ୍ଲେଖ କରିଛନ୍ତି—ଶବର ସ୍ୱାମୀ; ମହାଭାଷ୍ୟକାର, ଧ୍ୱନ୍ୟାଲୋକ; କୁମାରିଳ ଭଟ୍ଟ; ବାକ୍ୟ ପଦୀୟ, ଭର୍ତ୍ତୃମିତ୍ର ।

## ହୃଦୟ ଦର୍ପଣ

ଭଟ୍ଟନାୟକ ହେଉଛନ୍ତି ଭରତ ନାଟ୍ୟଶାସ୍ତ୍ରର ଜଣେ ପ୍ରଧାନ ଟୀକାକାର ଏବଂ ଉଲ୍ଲିଖିତ ଗ୍ରନ୍ଥର ପ୍ରଣେତା । ଧ୍ୱନ୍ୟାଲୋକର ଲୋଚନ ଟୀକାରେ ଏହାଙ୍କର ନାମୋଲ୍ଲେଖ ଥିବାରୁ ଏ ସର୍ବଥା ଖ୍ରୀ: ୧୦୦୦ର ପୂର୍ବବର୍ତ୍ତୀ । ଏହାଙ୍କ ମତରେ କାବ୍ୟରେ ବା ନାଟକରେ ଶବ୍ଦର ତିନିଗୋଟି କାର୍ଯ୍ୟ ସାଧନ କରିବାକୁ ହୁଏ । ଅଭିଧା, ଭାବନା, ଓ ଭୋଗିକୃତ । ଅଭିଧାର କ୍ଷେତ୍ର ବିଶାଳତମ ଏବଂ ଏହା ପ୍ରତ୍ୟେକ ଶାସ୍ତ୍ରରେ ଦେଖାଯାଏ । କିନ୍ତୁ କାବ୍ୟରେ ଅନ୍ୟ ଦୁଇଟିର ପ୍ରାଧାନ୍ୟ ବେଶୀ । ଭାବନା ଦ୍ୱାରା ଦର୍ଶକମାନଙ୍କ ସମ୍ମୁଖରେ ବିଭାବମାନଙ୍କର ଉପସ୍ଥାପନ ହୁଏ ଏବଂ ଶେଷଟି ଦ୍ୱାରା ରସଭୋଗ ବା ରସୋପଲବ୍ଧି ହୁଏ । ଭଟ୍ଟନାୟକ କାବ୍ୟର ଧ୍ୱନ୍ୟାତ୍ମକତ୍ୱ ସ୍ୱୀକାର କରିନାହାନ୍ତି । ସେ ଥିଲେ ରସାତ୍ମବାଦୀ । ଲୋଚନ ଟୀକାରେ ଧ୍ୱନ୍ୟାତ୍ମବାଦର ପ୍ରତିଷ୍ଠାବେଳେ ହୃଦୟ ଦର୍ପଣର ବଡ଼ ତୀବ୍ର ଓ କଟୁ ସମାଲୋଚନା କରାଯାଇଛି । କେବଳ କଟୁ ସମାଲୋଚନା ନୁହେଁ, ତାଙ୍କୁ ଉପହାସ କରି ଲୋଚନକାର ଲେଖିଛନ୍ତି—ସମସ୍ତେ ତ • ରସିକ, ଅତ କାବ୍ୟ ବୁଝିଶୁଝି କରିବାକୁ ପଡ଼ିବ କିଏ ?" ଯାହାହେଉ ସ୍ୱାଧୀନ ମତ ବ୍ୟକ୍ତ କରି ଭଟ୍ଟନାୟକ ଆଲୋଚନାର ପରିସରକୁ ପ୍ରସାରିତ କରି ଦେଇଛନ୍ତି ।

## ବକ୍ରୋକ୍ତି ଜୀବିତ

ଏ ଗ୍ରନ୍ଥ ପ୍ରଣୟନ କରି କୁନ୍ତକ ଅଲଂକାରିକ ଜଗତରେ ଏକ ଶୃଙ୍ଖଲ୍ୟ ସୃଷ୍ଟି କରି ଦେଇଥିଲେ । କାବ୍ୟର ଆତ୍ମା ସମ୍ବନ୍ଧେ ଭେଦେ ମତବାଦ ଥିଲା । କୌଣସି ଗୋଷ୍ଠିର ସଙ୍ଗେ ଲେଖକ ଏକମତ ହୋଇ ପାରିଲେ ନାହିଁ । ତାଙ୍କ ମତରେ ବକ୍ରୋକ୍ତି ହେଉଛି କାବ୍ୟର ଆତ୍ମା । ଧ୍ୱନ୍ୟାଲୋକ ଲେଖକ ତାଙ୍କ ପୂର୍ବବର୍ତ୍ତୀ କୌଣସି ବାଦରେ ଆସ୍ଥା ନ ରଖି ଯେଉଁ ଧ୍ୱନିକୁ କାବ୍ୟର ଆତ୍ମା ବୋଲି ନିରୂପଣ କରିଥିଲେ, କୁନ୍ତକଙ୍କ ମତରେ ସେହି ଧ୍ୱନି ବକ୍ରୋକ୍ତିର ଅନ୍ତର୍ଗତ । ବକ୍ରୋକ୍ତି ଜୀବିତରେ ପ୍ରାୟ ପାଞ୍ଚଶହ ଉଦାହରଣ ଦିଆଯାଇଛି । ବିଭିନ୍ନ ଗ୍ରନ୍ଥରୁ ଶ୍ଳୋକ ବାଛିବାରେ ମଧ୍ୟ କୁନ୍ତକ ଅସାଧାରଣ ବିଚାର ଶକ୍ତିର ପରିଚୟ ଦେଇଛନ୍ତି । ସେ ସ୍ୱମତ ସଂସ୍ଥାପନ କରିବାକୁ ଯାଇ ଭାମହ, ଦଣ୍ଡୀ, ଉଦ୍‌ଭଟ, ଆନନ୍ଦବର୍ଦ୍ଧନ, ପ୍ରଭୃତି ବହୁ ଶ୍ରେଷ୍ଠ ପ୍ରାଚୀନ ଲେଖକଙ୍କ ମତ ଖଣ୍ଡନ କରିଛନ୍ତି ଏବଂ ତହିଁ ସଙ୍ଗେ ଅସୀମ ସାହସ, ଆତ୍ମବିଶ୍ୱାସ ଓ ଋଷଣୀଳ ପାଣ୍ଡିତ୍ୟର ନିଦର୍ଶନ ପ୍ରକଟି ଉଠିଛି । ଭାମହ ଦୀପକ ଅଲଂକାରର ଯେଉଁ ତିନିଗୋଟି ଭେଦ ଦର୍ଶାଇଛନ୍ତି, ତାହା ଅମୂଳକ ରୂପେ କୁନ୍ତକ ଖଣ୍ଡନ କରିଛନ୍ତି । ପ୍ରାୟ ତିରିଶଜଣ ପ୍ରାଚୀନ ଲେଖକଙ୍କ ଶ୍ଳୋକ ସେ ଉଦାହରଣ ଦେବା ଲାଗି ଉଦ୍ଧାର କରିଛନ୍ତି । ଗ୍ରନ୍ଥଟି ଚାରିଗୋଟି ଉନ୍ମେଷରେ ବିଭକ୍ତ । ତଳେ ସମସ୍ତ ଉନ୍ମେଷର ସାର ଦିଆଗଲା ।

ପ୍ରଥମ ଉନ୍ମେଷ—କାବ୍ୟର ପ୍ରୟୋଜନ—ବକ୍ରୋକ୍ତିର ଲକ୍ଷଣ ଓ ପ୍ରାଧାନ୍ୟ—ଯେଉଁମାନେ ସ୍ୱଭାବୋକ୍ତିକୁ ଅଲଂକାର ରୂପରେ ଗ୍ରହଣ କରନ୍ତି ସେମାନଙ୍କ ଖଣ୍ଡନ—କାବ୍ୟ ... ଓ

ଅର୍ଥର ସାହିତ୍ୟ, କାବ୍ୟର ତିନିମାର୍ଗ,—ବୈଚିତ୍ର୍ୟମାର୍ଗ, ସୁକୁମାର ମାର୍ଗ ଓ ମଧ୍ୟମମାର୍ଗ ।

ଦ୍ୱିତୀୟ ଉନ୍ମେଷ—ବର୍ଣ୍ଣ ବିନ୍ୟାସ, ବକ୍ରତ୍ୱର ବ୍ୟାଖ୍ୟାନ (ଏହା ପ୍ରାଚୀନ ଅଲଂକାରିକମାନଙ୍କର ଅନୁପ୍ରାସ ପ୍ରଭୃତି ସଙ୍ଗେ ସମାନ ) ବକ୍ରତ୍ୱର ଭେଦ ବିସ୍ତୃତ—ପଦ ପୂର୍ବାର୍ଦ୍ଧ ବକ୍ରତା—ଉପସର୍ଗର ବକ୍ରତା, ବିଶେଷଣ ବକ୍ରତା ଇତ୍ୟାଦି ।

ତୃତୀୟ ଉନ୍ମେଷ—ବାକ୍ୟ ବୈଚିତ୍ର୍ୟ ବକ୍ରତା—ବସ୍ତୁ ବକ୍ରତା—ଅନ୍ୟ ଆଲଂକାରିକମାନେ ଯେଉଁ ସବୁ ରସବଦ୍, ପ୍ରେୟଃ ଊର୍ଜ୍ଜସ୍ୱି, ସମାହିତ, ଉଦାତ୍ତ ପ୍ରଭୃତିକୁ ଅଲଂକାର ସ୍ଥାନ ଦେଇଛନ୍ତି ସେଗୁଡ଼ିକର ଖଣ୍ଡନ ।

ଚତୁର୍ଥ ଉନ୍ମେଷ—ପ୍ରକରଣ ବକ୍ରତା ଓ ପ୍ରବନ୍ଧ ବକ୍ରତା—ପ୍ରତିଭାବାନ୍ କବିର ବୈଶିଷ୍ଟ୍ୟ ପ୍ରତିପାଦନ ଇତ୍ୟାଦି ।

କାବ୍ୟର ବକ୍ରୋକ୍ତି—ଅମୃବାଦର ସାରତତ୍ତ୍ୱ ଯାହା ହେଉନଚେ, ଗ୍ରନ୍ଥ ପ୍ରତିଫଳିତ ମୌଳିକ ଚିନ୍ତା, ଶତ ଶତ ବର୍ଷର ପ୍ରତିଷ୍ଠିତ ମତବାଦମାନଙ୍କର ନିର୍ଭୀକ ଖଣ୍ଡନ ଓ ସର୍ବୋଦୌ ଯୁକ୍ତି ଯୁକ୍ତିଭାବେ ନିଜ ମତର ଉପସ୍ଥାପନ—ଏଗୁଡ଼ିକ କୁନ୍ତକଙ୍କୁ ଅଲଂକାର ରାଜ୍ୟରେ ଚିରସ୍ମରଣୀୟ କରିଅଛି ।

## ଉଲ୍ଲିଖିତ ନାମ—

ପୂର୍ବବର୍ତ୍ତୀ ଯେଉଁ ଲେଖକମାନଙ୍କର ବା ଗ୍ରନ୍ଥର ଶ୍ଳୋକ ବା ମତ ସେ ଉଦ୍ଧାର କରିଛନ୍ତି, ସେ ମଧ୍ୟରେ ନିମ୍ନଲିଖିତ ନାମଗୁଡ଼ିକ ଉଲ୍ଲେଖ୍ୟ—ସେତୁପ୍ରବନ୍ଧ (ନାଟକ) ହର୍ଷଚରିତ, ହୟଗ୍ରୀବବଧ ରାମାୟଣ, ମହାଭାରତ, କାଳିଦାସକୃତି, ବେଣୀ ସଂହାର, ଶକୁନ୍ତଳା, ନାଗାନନ୍ଦ, ରଘୁବଂଶୀୟ, ହରଚରିତ, ରାମାଭ୍ୟୁଦୟ, ପାଣ୍ଡବା-

ଭ୍ୟୁଦୟ, କର୍ପୂରମଞ୍ଜରୀ, ଜୀବନ୍ମୁକ୍ତ, ଭାଳଗ୍ରମାୟଣ, ମୁଦ୍ରାରାକ୍ଷସ,
ମାଳତୀ ମାଧବ, ମାୟାପୁଷ୍ପକ, ପୁଷ୍ପ ଦୂଷିତକ, ଶିଶୁପାଳବଧ,
ବାଣଭଟ୍ଟ, ପ୍ରତିମା ନାଟକ ଓ ସ୍ୱପ୍ନ ବାସବଦତ୍ତ । ଏ ମଧ୍ୟରୁ ଅନେକ
ଗ୍ରନ୍ଥ ଆଜି ସମ୍ପୂର୍ଣ୍ଣ ଲୁପ୍ତ ହୋଇଯାଇଛି ।

କୁନ୍ତକ, ଧ୍ୱନ୍ୟାଲୋକ, ରୁଦ୍ରଟ ଓ ରାଜଶେଖରଙ୍କ ମତ ଉଦ୍ଧାର
କରିଥିବାରୁ ସର୍ବଥା ଏମାନଙ୍କ ପରବର୍ତ୍ତୀ ବା ଶେଷ ଲେଖକଙ୍କ
ସମସାମୟିକ । ପୁଣି ବକ୍ରୋକ୍ତି ଜୀବିତ ଏକାଦଶ ଶତାବ୍ଦୀର ଦ୍ୱିତୀୟ
ଅର୍ଦ୍ଧରେ ଲିଖିତ 'ବ୍ୟକ୍ତିବିବେକ'ରେ ସମାଲୋଚିତ ହୋଇଥିବାରୁ
ଅନୁମାନ କରାଯାଏ, ଯଥାସମ୍ଭବ ଦଶମ ଶତାବ୍ଦୀର ଦ୍ୱିତୀୟ
ବା ଏକାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ କୁନ୍ତକ ଜୀବିତ ଥିଲେ ।

## ଦଶରୂପକ

ଧନଞ୍ଜୟ ଏହାର ପ୍ରଣେତା । ଧନିକ ଲିଖିତ ଅବଲୋକ
ଏହାର ପ୍ରଧାନ ଟୀକା । ଏଥିରେ ନାଟକୀୟ ବିଷୟ ବଳୀର ଚର୍ଚ୍ଚା
ବିଶେଷ ପରିମାଣରେ ହୋଇଛି । ଏଥି ସଙ୍ଗେ ରସର ମଧ୍ୟ ଆଲୋ-
ଚନା ହୋଇଥିବାରୁ ଅଳଙ୍କାରର ଇତିହାସରେ ଆଦୌ ନଗଣ୍ୟ
ବିବେଚିତ ହୋଇ ପାରିବ ନାହିଁ । ଗ୍ରନ୍ଥଟି ଚାରିଗୋଟି ପ୍ରକାଶରେ
ସମ୍ପୂର୍ଣ୍ଣ ଓ କାରିକା ଗୁଡ଼ିକର ସଂଖ୍ୟା ପ୍ରାୟ ତିନିଶହ । ତଳେ
ଗ୍ରନ୍ଥଟିର ଏକ ସଂକ୍ଷିପ୍ତ ସୂଚୀ ପ୍ରଦତ୍ତ ହେଲା :—

ପ୍ରଥମ ଅଧ୍ୟାୟ—ଦଶବିଧ ରୂପକ, ପଞ୍ଚସନ୍ଧି ଓ ସେମାନଙ୍କ ଅଙ୍ଗ ।
ଦ୍ୱିତୀୟ „ —ନାୟକ ନାୟିକା ଭେଦ ଓ ବୃତ୍ତି ଚତୁଷ୍ଟୟ ।
ତୃତୀୟ „ —ନାଟକର ଉପଯୋଗୀ ନାନା କଥା ।

ଚତୁର୍ଥ ଅଧ୍ୟାୟ—ରସ ପ୍ରକରଣ

ଗ୍ରନ୍ଥର ସୂଚୀରୁ ଏହା ଅନୁମିତ ହେବା ଅସମ୍ଭବ ନୁହେ ଯେ ଆଲୋଚିତ ବସ୍ତୁ ଗୁଡ଼ିକର ବିସ୍ତାର ବଡ଼ ସଂକ୍ଷିପ୍ତ । କିନ୍ତୁ ଗ୍ରନ୍ଥ ବାହୁଲ୍ୟ ଭୟରେ ଲେଖା ନ ଯାଇଥିଲେ ମଧ୍ୟ ଆଲୋଚିତ ବିଷୟ ଗୁଡ଼ିକର ବିଶ୍ଳେଷଣ ପ୍ରଣାଳୀ ଓ ଉଦ୍ଧୃତ ଯେସବୁ ସୁନ୍ଦର ସେହିପରି ବିଶାଳ, ଦଶ ରୂପକରେ ସୂଚିତ ହୋଇଛି ଯେ ଲେଖକ କାବ୍ୟ ନିର୍ଣ୍ଣୟ ନାମକ ଅନ୍ୟ ଏକ ଗ୍ରନ୍ଥ ଲେଖିଥିଲେ । ଧନଞ୍ଜୟ ମୁଞ୍ଜନାମକ ଜଣେ ରାଜାଙ୍କର ସଭାସଦ ଥିଲେ ଏବଂ ତାଙ୍କ ପିତାଙ୍କ ନାମ ବିଷ୍ଣୁ । ଅନେକ ପଣ୍ଡିତ କହନ୍ତି, ମୁଞ୍ଜ ନୃପତି ଖ୍ରୀ ୯ ୭—୯୯୪ ପର୍ଯ୍ୟନ୍ତ ଶାସନ କରିଥିଲେ । ଯେବେ ଏହା ଠିକ୍ ହୁଏ, ତେବେ ଧନଞ୍ଜୟଙ୍କୁ ଦଶମ ଶତାବ୍ଦୀର ଶେଷଭାଗର ଲୋକ ବୋଲି ଧରି-ନେବାକୁ ହେବ । କିନ୍ତୁ ସ୍ୱୀୟ ଗ୍ରନ୍ଥରୁ ତାଙ୍କ ଜୀବନକାଳର କୌଣସି ଉଲ୍ଲେଖ୍ୟ ସୂଚନା ମିଳୁ ନାହିଁ ।

ଅବଶ୍ୟକ ସ୍ଥଳରେ ଉଦାହରଣ ଦେବା ଲାଗି ସେ ଉଲ-ଲିଖିତ ପ୍ରାଚୀନ କବିଙ୍କର ବା ଗ୍ରନ୍ଥରୁ ଶ୍ଳୋକ ଉଦ୍ଧାର କରିଛନ୍ତି ବେଣୀ ସଂହାର, ଅମରୁ ଶତକ, ମାଳତୀ ମାଧବ, ଉତ୍ତରରାମ ଚରିତ, ବୃହତ୍ କଥା, ଧନିକ, କୁମାର-ସମ୍ଭବ, ବୀର ଚରିତ, ଗୋବର୍ଦ୍ଧନ ବଳୀ ଵଲୀ, ବିଦ୍ଦଶାଳଭଞ୍ଜିକା, ମାଘ, ମେଘଦୂତ, ଚନ୍ଦ୍ରକ, ହନୁମନ୍ନାଟକ, ରଘୁବଂଶ, ପାଣ୍ଡବା ନନ୍ଦ, କିରାତାର୍ଜୁନୀୟ, ଛଳିତରାମ, ବୃହତ୍ କଥା, ପଦ୍ମଗୁପ୍ତ, ଗାଥା ସପ୍ତଶତୀ, ଉଦାତ୍ତ ରାଘବ, ନାଗାନନ୍ଦ, ମାଳବିକାଗ୍ନିମିତ୍ର, କର୍ପୂରମଞ୍ଜରୀ, ରତ୍ନାବଳୀ, ରୁଦ୍ରଟ, ଭର୍ତ୍ତୃହରି, ମୃଚ୍ଛକଟିକ, ମହେନ୍ଦ୍ର, ଭୋଜପ୍ରବନ୍ଧ ଓ ବିଦ୍ଧ ଶାଲଭଞ୍ଜିକା ।

ଦଶରୂପକର ଗୁରୁଗୋଟି ଟୀକା ଦେଖାଯାଏ । ଧନିକ ଯେ ଧନଞ୍ଜୟଙ୍କ ସମସାମୟିକ ଏଥିରେ ସନ୍ଦେହ ନାହିଁ. ଯେ, ହେତୁ ଧନିକଙ୍କ ଅନ୍ୟ କୌଣସି ଗ୍ରନ୍ଥରୁ ଧନଞ୍ଜୟ ଶ୍ଲୋକ ଆଣିଛନ୍ତି ଏବଂ ଧନିକ ସେହି ଗ୍ରନ୍ଥର ଟୀକାକାର । ଟୀକାରେ କୃଷ୍ଣ-ଶର୍ମାନଙ୍କର ସରଳ ପ୍ରଭଣର ଦିଆଯାଇଛି ଏବଂ ସନ୍ଦେହ ସ୍ଥଳରେ ଚୂର୍ଣ୍ଣ-କାରଙ୍କ ଉଦ୍ଦିଷ୍ଟ ମତ ସ୍ପଷ୍ଟ କରାଯାଇଛି । ଦେବପାଣି, କୁରବ ରାମ ଓ ନୃସିଂହ ଭଟ୍ଟ ହେଉଛନ୍ତି ଅନ୍ୟ ତିନିଜଣ ଟୀକାକାର ।

---

## ସପ୍ତମ ପରିଚ୍ଛେଦ

### ( ଏକାଦଶ ଶତାବ୍ଦୀ ଠାରୁ ତ୍ରୟୋଦଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ )

### ସରସ୍ୱତୀ କଣ୍ଠାଭରଣ

ଭୋଜ ନରପତି ହେଉଛନ୍ତି ଏହାର ପ୍ରଣେତା । ଗ୍ରନ୍ଥଟିକୁ ଏକ ବୃହତ୍ ସଂକଳନ ରୂପେ ଗ୍ରହଣ କଲେ ବୋଧହୁଏ ସତ୍ୟର ଅପଳାପ ହେବ ନାହିଁ । ତଳେ ସରସ୍ୱତୀ କଣ୍ଠାଭରଣର ଏକ ସୂଚୀ ଦିଆଗଲା । ଏହା ପାଞ୍ଚଗୋଟି ପରିଚ୍ଛେଦରେ ବିଭକ୍ତ ।

ପ୍ରଥମ ପରିଚ୍ଛେଦ—ଷୋଡ଼ଶ ପଦ ଦୋଷ, ଷୋଡ଼ଶ ବାକ୍ୟ-ଦୋଷ, ଷୋଡ଼ଶ ଅର୍ଥଦୋଷ, ଶବ୍ଦର ଚତୁର୍ବିଂଶ ଗୁଣ, ଅର୍ଥର ଚତୁର୍ବିଂଶ ଗୁଣ ବର୍ଣ୍ଣନ ।

ଦ୍ୱିତୀୟ ପରିଚ୍ଛେଦ—ଚତୁର୍ବିଂଶ ଶବ୍ଦାଳଂକାରର ଆଲୋଚନା ।

ତୃତୀୟ „—ଚତୁର୍ବିଂଶ ଅର୍ଥାଳଂକାର ବର୍ଣ୍ଣନ ।

ଚତୁର୍ଥ „—ଶବ୍ଦ ଓ ଅର୍ଥ-ଏ ଉଭୟର ଚତୁର୍ବିଂଶ ଅଳଙ୍କାର

ପଞ୍ଚମ „—ରସ, ଭାବ, ନାୟକ ନାୟିକା, ପଞ୍ଚସନ୍ଧି, ବୃତ୍ତି ଇତ୍ୟାଦି ।

ଦଣ୍ଡୀଙ୍କ କାବ୍ୟାଦର୍ଶରୁ ପ୍ରାୟ ଦୁଇଶତ ଶ୍ଳୋକ ସରସ୍ୱତୀ କଣ୍ଠାଭରଣରେ ଉଦାହୃତ ହୋଇଛି । ପୁଣି ବହୁଗ୍ରନ୍ଥର ଓ ଗ୍ରନ୍ଥ-କାରଙ୍କ ନାମ ତହିଁରେ ଉଲ୍ଲିଖିତ ହୋଇଛି । ଅନ୍ୟ ଅଳଂକାର

ଗ୍ରନ୍ଥ ସଙ୍ଗେ ଅଲୋଚିତ ଗ୍ରନ୍ଥର ତୁଳନା କଲେବେଳେ ଏପରି କେତେକ କଥା ଦୃଷ୍ଟି ପଥାରୂଢ଼ ହୁଏ ଯାହା ବସ୍ତୁତଃ ନୂଆ ତଥ୍ୟ ଉଦ୍ଦୀପନ କରେ । କେତୋଟି କଥା ହେଲେ କୁହାଯାଉ—

[କ] ଉପମା, ଅକ୍ଷେପ, ସମାସୋକ୍ତି ଓ ଅପହ୍ନୁତି—ଏଗୁଡ଼ିକ ଶବ୍ଦ ଓ ଅର୍ଥ ଉଭୟର ଅଳଂକାର ହୋଇ ପାରିବ ବୋଲି ଭୋଜଙ୍କର ମତ । ଏ କଥାର ବିଶେଷତ୍ୱ ଏହି ଯେ ଅର୍ଥଗ୍ରନ୍ଥ ଅଗ୍ନିପୁରାଣ ବ୍ୟତୀତ ଅନ୍ୟ କୌଣସି ଅଳଂକାରିକ ଏ ମତ ପୋଷଣ କରି ନାହାନ୍ତି ।

[ଖ] ଭୋଜଙ୍କ ମତରେ ସ୍ୱୀକୃତ ହେଉଛି ଗୋଟିଏ ଶବ୍ଦାଳ-ଙ୍କାର ଯାହା ଅନ୍ୟ କୌଣସି ଲେଖକ ସ୍ୱୀକାର କରିନାହାନ୍ତି ।

(ଗ) ଅନ୍ୟମାନଙ୍କ ତୁଳନାରେ ଏହାଙ୍କ ରୀତିର ସଂଖ୍ୟା ଅଧିକ । ଏ ଛଅଗୋଟି ରୀତିର ଅଲୋଚନା କରିଛନ୍ତି— ବୈଦର୍ଭୀ, ପାଞ୍ଚାଳୀ, ଗୌଡ଼ୀୟା, ଅବନ୍ତିକା, ଲାଟୀୟା, ମାଗଧୀ ।

(ଘ) ଅନ୍ୟ ଅଳଂକାରିକମାନେ ରସର ଅଲୋଚନା କଲା-ବେଳେ ମୁଖ୍ୟ ଗୌଣ ଭେଦରେ ସକଳ ରସର ଅଲୋଚନା କରିଛନ୍ତି । ଭୋଜଦେବଙ୍କ ଲେଖାରୁ ଜଣାଯାଏ, ସତେ ଯେପରି ତାଙ୍କ ମତରେ 'ଶୃଙ୍ଗାର' କେବଳ ରସଶବ୍ଦ ବାଚ୍ୟ ।

[ଙ] ଅଳଂକାରର ଏତେ ବିଷଦ ଅଲୋଚନା ସେ କରିଛନ୍ତି ଯେ ଗୁଣ ଓ ରସକୁ ମଧ୍ୟ ସେ ତାହାର ଅନ୍ତର୍ଗତ କରାଇ ଦେଇ-ଛନ୍ତି । ପୂର୍ବବର୍ତ୍ତୀ ଲେଖକମାନଙ୍କର ପ୍ରାୟ ୧୬ ଶହ ଶ୍ଲୋକ ସେ ଉଦାହରଣ ଦେବାଲାଗି ଉଦ୍ଧାର କରିଛନ୍ତି । ସେ ଉଲ୍ଲେଖ କରିଥିବା ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ମଧ୍ୟରୁ କେତୋଟି ନାମ ତଳେ ପ୍ରଦତ୍ତ ହେଲା । ରାଜଶେଖର, କାଳିଦାସ, ରାମାୟଣ, ମହାଭାରତ, ରତ୍ନାବଳୀ,

ବେଣୀସଂହାର, ଉତ୍ତର, ରୁଦ୍ରଟ, କାଦମ୍ବରୀ, ଶିଶୁପାଳବଧ, ଅଭିଧାନ ମାଳା, ଭଟ୍ଟି, ଭାରବି, ଧ୍ୱନ୍ୟାଲୋକ, ଵାମନ, ତାପସ-ବତ୍ସରାଜ ଓ ଚୌର ପଞ୍ଚାଶିକା ।

## ଟୀକାଗ୍ରନ୍ଥ:—

ରତ୍ନେଶ୍ୱରଙ୍କ ରତ୍ନଦର୍ପଣ ହେଉଛି ସରସ୍ୱତୀ କଣ୍ଠାଭରଣର ସର୍ବପ୍ରଧାନ ଟୀକା । ରତ୍ନେଶ୍ୱରଙ୍କ ବ୍ୟକ୍ତିଗତ ଇତିହାସ ବା ତାଙ୍କ ସମ୍ପର୍କୀୟ କୌଣସି ବିବରଣୀ ମିଳିବାର ଉପାୟ ବର୍ତ୍ତମାନ ନାହିଁ । ଅନେକ ଦିଗରୁ ଟୀକାର ଆଲୋଚନା କରି ଅନୁସନ୍ଧିତ୍ସୁ ପଣ୍ଡିତମାନେ ଅନୁମାନ କରନ୍ତି, ଯଥାସମ୍ଭବ ସେ ଚତୁର୍ଦ୍ଦଶ ଶତାବ୍ଦୀର ଲୋକ । କିନ୍ତୁ ଏକଥା ନିଶ୍ଚିତ, ସେ ଯେଉଁଭଳି ଭାବରେ ଅନେକ ସନ୍ଦେହ ସଙ୍କୁଳ ସ୍ଥଳରେ ଅଲୋକ ବିକୀରଣ କରିଛନ୍ତି, ତହିଁରୁ ସେ ଜଣେ ସୁଯୋଗ୍ୟ ଆଲଂକାରିକ ଥିବା ପ୍ରମାଣିତ ହୁଏ । ଦୁଃଖର କଥା, ରତ୍ନ ଦର୍ପଣର ସକଳ ଅଂଶ ଏ ପର୍ଯ୍ୟନ୍ତ ମିଳି ନାହିଁ । ଅନ୍ୟ ଟୀକା ମଧ୍ୟରେ ଲକ୍ଷ୍ମୀନାଥ ଭଟ୍ଟଙ୍କର ଦୁଷ୍କର ପ୍ରକାଶିକା, ହରି ନାଥଙ୍କ ମାର୍ଜନ, ଜଗଦ୍ଧରଙ୍କ ବିବରଣ ଉଲ୍ଲେଖଯୋଗ୍ୟ ।

## ଭୋଜଙ୍କ ଅନ୍ୟାନ୍ୟ ଗ୍ରନ୍ଥ :—

ଗବେଷଣା ଦ୍ୱାରା ଜଣାଯାଇଛି, ଭୋଜଙ୍କ ଅନ୍ୟ କେତେକ ଗ୍ରନ୍ଥ ଥିଲା । ବିଶେଷତଃ 'ମିତାକ୍ଷରା'ରୁ ଜଣାଯାଏ ଯେ ସେ ଧର୍ମଶାସ୍ତ୍ର ସମ୍ପର୍କୀୟ କୌଣସି ଏକ ଗ୍ରନ୍ଥ ଲେଖିଥିଲେ । ତାଙ୍କ ସମୟ ଏ ପର୍ଯ୍ୟନ୍ତ ଏକ ବିବାଦ ମୂଳକ ବିଷୟ ହୋଇ ରହିଛି । ନାନା ମତ ମଧ୍ୟରେ ଗୋଟିଏ ଯୁକ୍ତି ସଙ୍ଗତ ମତ ହେଉଛି ସେ ଖ୍ରୀ:—୧୦୦୫ ୧୦୫୫ ମଧ୍ୟରେ ଜୀବିତ ଥିଲେ । କେତେକଙ୍କ ମତରେ ଭୋଜରାଜ ଐନ୍ଦ୍ରଜାଲିକ ବିଦ୍ୟାରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ପୁଣି

ସରସ୍ୱତୀ କଣ୍ଠାଭରଣ ବଂଶୀତ ସେ ଶୃଙ୍ଗାର ମଞ୍ଜରୀ, ଗୁରୁଚର୍ଯ୍ୟା, ତନ୍ତ୍ର ପ୍ରକାଶ ଓ ବ୍ୟବହାର-ସମୁଚ୍ଚୟ ପ୍ରଣୟନ କରିଥିଲେ । କିନ୍ତୁ ଏହିକ କୌଣସି ଏକ ବ୍ୟକ୍ତିର ନାମ ନ ହୋଇ ଗୋଟିଏ ସାଧାରଣ ଉପାଧି ହୋଇଥିବାରୁ ଏ ସମସ୍ତ ଗ୍ରନ୍ଥର ଲେଖକ ଜଣେ କି ବହୁ ଜଣ ଜାଣି ହେଉ ନାହିଁ ।

## ଅଳଂକାର ଶେଖର—

କେଶବ ମିଶ୍ର ଏହାର ପ୍ରଣେତା । ପଣ୍ଡିତ ଶ୍ରୀ ଜଗନ୍ନାଥଙ୍କ ପରି ଉକ୍ତ ଲେଖକ ମଧ୍ୟ ନିଜ ଲେଖାର ପ୍ରଶଂସା ନିଜେ ଯଥେଷ୍ଟ କରି ଯାଇଛନ୍ତି । ସମଗ୍ର ଗ୍ରନ୍ଥଟି ଆଠଗୋଟି ରତ୍ନରେ ବିଭକ୍ତ ଏବଂ ପ୍ରତ୍ୟେକ ରତ୍ନ କେତେ ଗୋଟି ମରୀଚିରେ ବିଭକ୍ତ । ମରୀଚି ଅନୁକ୍ରମେ ଗ୍ରନ୍ଥଗତ ବିଷୟର ଏକ ସୂଚୀ ତଳେ ପ୍ରଦତ୍ତ ହେଲା ।

୧ ମ ମରୀଚି—କାବ୍ୟ ସ୍ୱରୂପ ନିରୂପଣ—କାବ୍ୟ ହେତୁ ।
୨ ୟ ” —ରୀତି, ଉକ୍ତି ମୁଦ୍ରା ଓ ସେମାନଙ୍କ ଭେଦ ।
୩ ୟ ” —ଶବ୍ଦ ଶକ୍ତି—ଲକ୍ଷଣା, ବ୍ୟଞ୍ଜନା ।
୪ ର୍ଥ ” —ଆଠ ଗୋଟି ପଦ ଦୋଷ ।
୫ ମ ” —ବାରଗୋଟି ବାକ୍ୟ ଦୋଷ—ଭଗ୍ନକ୍ରମ ଭଗ୍ନପଦ ପ୍ରଭୃତି ।
୬ ଷ୍ଠ —ଆଠଗୋଟି ଅର୍ଥଦୋଷ—ଗ୍ରାମ୍ୟତ୍ୱ, ଶ୍ଳୀଳତ୍ୱ,
୭ ମ —ଉଦାରତ୍ୱ ସଂକ୍ଷିପ୍ତତ୍ୱ ପ୍ରଭୃତି ଗୁଣପଞ୍ଚକ ।
୮ ମ ” — ଭାବକତ୍ୱ, ସୁଶବ୍ଦତ୍ୱ, ପ୍ରଭୃତି ଅର୍ଥର ଗୁଣ ଚତୁଷ୍ଟୟ ।
୯ ମ —ଦୋଷ କପରି ଗୁଣ ହୁଏ ।

୧୦ ମ ମଞ୍ଜରି— —ପ୍ରହେଳିକା ପ୍ରଭୃତି ୮ଟି ଶବ୍ଦାଳଙ୍କାର ।
୧୧ ଶ " —ଉପମା ପ୍ରଭୃତି ୧୪ ଶ ଅର୍ଥାଲଂକାର ।
୧୨ ଶ " —ରୂପକର ଭେଦ ।
୧୩ ଶ " —କେତେକ ଅର୍ଥାଲଂକାରର ବିସ୍ତାର ।
୧୪ ଶ " —ନାୟକର ପ୍ରତ୍ୟେକ ଅଙ୍ଗ ବର୍ଣ୍ଣନା ବେଳେ ଉପମା ନିରୂପଣ ।
୧୫ ଶ —କବି ସମୟ ପ୍ରସିଦ୍ଧି ।
୧୬ ଶ —କାବ୍ୟରେ ବର୍ଣ୍ଣନୀୟ ବସ୍ତୁର ସ୍ୱରୂପ ।
୧୭ ଶ —ପ୍ରାକୃତିକ ବସ୍ତୁମାନଙ୍କର କାବ୍ୟରେ ବର୍ଣ୍ଣନୀୟ ବର୍ଣ୍ଣ ।
୧୮ ଶ —ସଂଖ୍ୟାମାନଙ୍କର ଗଣନା ଓ କେତେକ ଭାଷାଗତ ସୂଚନା ।
୧୯ —ସମସ୍ୟା ପୂରଣ ।
୨୦ —ନବରସ ଓ ନାୟକ ନାୟିକା ।
୨୧ —ରସଦୋଷ ।
୨୨ " —ରସାନୁକୂଳ ଅକ୍ଷର (ବର୍ଣ୍ଣ) ବିସ୍ତାର ।

ଉକ୍ତ ଗ୍ରନ୍ଥଟି ମଧ୍ୟ ବୃତ୍ତ, କାରିକା ଓ ଅଲଂକାର ଭେଦରେ ତିନିଭାଗରେ ବିଭକ୍ତ । ବୃନ୍ଦାବନ ଶୌଣ୍ଡିକ କୌଣ୍ଡିନ୍ୟ ଲେଖିଥିଲେ ବୋଲି କେଶବ ମିଶ୍ର ନିଜେ ଲେଖିଛନ୍ତି । କିନ୍ତୁ ପୂର୍ବକଥିତ ବ୍ୟକ୍ତିଙ୍କର ପରିଚୟ ପାଇବାର କୌଣସି ଉପାୟ ନାହିଁ । ଏଥିରୁ ଜଣାଯାଏ, ରାଜା ମାଣିକ୍ୟ ଚନ୍ଦ୍ର ଏକାଦଶ ଶତାବ୍ଦୀରେ ଶାସନ କରୁଥିଲେ । ସେ ଉତ୍ତର ବଙ୍ଗର ଜଣେ ଖ୍ୟାତନାମା ରାଜା । ଅଲଂକାର ଶେଖରର କବି ସ୍ପଷ୍ଟ ଲେଖିଛନ୍ତି—

"ଶ୍ରୀମତ୍ତେଜୋ ଶବଚିଶମଦ୍‌ଭୁତଗୁଣାବାସଂ ନିଯୁଜ୍ୟ ସ୍ୱୟଂ
ଚତେକ ଶକ ସମଃ ତ୍ରିବନ୍ଧ ମନସଂ ମାଣିକ୍ୟଚନ୍ଦ୍ରୋ ନୃପଃ ।"

ଅଳଂକାର ଶେଖରରେ ରସାସ୍ୱାଦ ସ୍ୱୀକୃତ ହୋଇଛି । ପୁଣି କବିକଳ୍ପଲତା, ଭର୍ଦ୍ଦେବସର୍ବସ୍ୱ, ସଜଶେଖର, ଶ୍ରୀହର୍ଷ, ଗୋବର୍ଦ୍ଧନ, କୁମାର ସମ୍ଭବ, ଶ୍ରୀପାଦ, ଦଣ୍ଡୀ, ଜୟଦେବ ପ୍ରଭୃତିଙ୍କର ଶ୍ଲୋକମାନ ଅଛି । ଜୟଦେବ ଏହାଙ୍କ ସମସାମୟିକ ହେବା ସମ୍ଭବ । କେଶବ ମିଶ୍ରଙ୍କର ଭାଷା ବଡ଼ ନିର୍ମଳ ଓ ବର୍ଣ୍ଣନ ପ୍ରଣାଳୀ ସରଳ ତଥା ସୁନ୍ଦର ।

## ଔଚିତ୍ୟ ବିଚାର ଚର୍ଚ୍ଚା

କ୍ଷେମେନ୍ଦ୍ରଙ୍କର ଦୁଇଗୋଟି ଅଳଂକାର ଗ୍ରନ୍ଥ ମଧ୍ୟରୁ ଆଲୋଚିତ ଗ୍ରନ୍ଥଟି ହେଉଛି ପ୍ରଥମ ଓ କବିକଣ୍ଠାଭରଣ ହେଉଛି ଦ୍ୱିତୀୟ । ଅବଶ୍ୟ ସେ ଭୋଜଙ୍କର ସମସାମୟିକ ବା ସ୍ୱଳ୍ପ ପରବର୍ତ୍ତୀ ହୋଇଥିବାର ସୂଚନା, ଅନ୍ୟାନ୍ୟ ବିଷୟ ମଧ୍ୟରେ 'କବିକଣ୍ଠାଭରଣ' ନାମରୁ ମିଳେ କହିବା ଉଚିତ ହେବ ନାହିଁ । କ୍ଷେମେନ୍ଦ୍ର ଜଣେ କାଶ୍ମୀରୀ ପଣ୍ଡିତ । ଶ୍ରୁତ ପରଂପରା ଉପରେ ଯେବେ ବିଶ୍ୱାସ ସ୍ଥାପନ କରାଯାଏ, ତେବେ କ୍ଷେମେନ୍ଦ୍ରଙ୍କୁ ଆଚାର୍ଯ୍ୟ ଅଭିନବଗୁପ୍ତ ଛାତ୍ରର ହେଣୋଚା ରୂପେ ଗ୍ରହଣ କରିବାକୁ ହେବ । ତାଙ୍କର ଗ୍ରନ୍ଥ ରାଜି ମଧ୍ୟରେ ନିମ୍ନଲିଖିତ ଗ୍ରନ୍ଥଗୁଡ଼ିକ ଅନ୍ୟତମ :—ବୃହତ୍ କଥା, ଭାରତ-ମଞ୍ଜରୀ ସୁବୃତ୍ତତିଳକ, ସମୟ ମାତୃକା, ଅବସର ସାର, ଅମୃତ ତରଙ୍ଗ, ବାତ୍ସ୍ୟାୟନ-ସୂତ୍ରସାର, ଲାବଣ୍ୟବତୀ (କାବ୍ୟ), ମୁନିମତ ମୀମାଂସା (ଦର୍ଶନ), ମୁକ୍ତାବଳୀ କାବ୍ୟ, କନକ ଜାନକୀ, କବିକର୍ଣ୍ଣିକା, ନୀତିଲତା, ଦେଶୋପଦେଶ, ଚିତ୍ରଭାରତ ନାଟକ, ବୌଦ୍ଧାବଦାନ-କଳ୍ପଲତା ପଦ୍ୟ କାଦମ୍ବରୀ, ଚତୁର୍ବର୍ଗ ସଂଗ୍ରହ, ଲଳିତରତ୍ନମାଳା,

ଚନ୍ଦ୍ରଚନ୍ଦ୍ରିକା ଓ ଶଶିବଂଶ । ଏଥିରୁ ଅନେକ ଗ୍ରନ୍ଥର ନାମ ବ୍ୟତୀତ ଅନ୍ୟ କିଛି ମିଳି ନାହିଁ । ତେବେ ଏଠାରେ କବିଙ୍କ ବିଷୟରେ ଏତିକି କହିଲେ ବୋଧହୁଏ ଅପଟେଣ୍ଟ ହେବ ନାହିଁ ଯେ ସେ ଏକାଧାରରେ କବି, ଅଳଂକାରିକ, ଦାର୍ଶନିକ, ନାଟ୍ୟକାର, କାମଶାସ୍ତ୍ରଜ୍ଞ ଓ ଛନ୍ଦୋଜ୍ଞ ଥିଲେ ।

ସୁବୃତ୍ତ ତିଳକ ଛନ୍ଦୋବିଷୟକ ଏକ ଗ୍ରନ୍ଥ । ଏଥିରେ ସେ ଭିନ୍ନ କବିମାନଙ୍କର ଉତ୍କର୍ଷ ବିଧାନ ନିମନ୍ତେ ଜଣେ ପ୍ରମାଣିକ ଐତିହାସିକ ପରି ଦର୍ଶାଇ ଦେଇଛନ୍ତି ଯେ ଅମୁକ ସ୍ଥଳରେ ନିଜର ଦକ୍ଷତା ଥିବା ଅମୁକ ଅମୁକ ଛନ୍ଦ ବ୍ୟବହାର କରି କବିମାନେ ସୁଖ୍ୟାତି ଓ ସୁନାମ ଅର୍ଜନ କରିଥିଲେ । ଔଚିତ୍ୟ ବିଷୟର ଚର୍ଚ୍ଚା ଅନ୍ୟ ଅନେକ ଅଳଂକାର ଗ୍ରନ୍ଥ ଭଳି କାରିକା, ବୃତ୍ତି ଓ ଉଦାହରଣ ଭେଦରେ ତିନିଭାଗରେ ବିଭକ୍ତ କରାଯାଇପାରେ । ଉଦାହୃତ ଶ୍ଲୋକ ମଧ୍ୟରେ ତାଙ୍କର ନିଜ ରଚିତ ଶ୍ଲୋକ ମଧ୍ୟ ରହିଛି । ସେ ପୂର୍ବବର୍ତ୍ତୀ ସକଳ ମତବାଦର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି ସେଗୁଡିକରେ ପୂର୍ଣ୍ଣ ସମ୍ମତ ନ ହୋଇ ଏକ ନୂତନ 'ବାଦ'ର ପ୍ରତିଷ୍ଠା ଲକ୍ଷ୍ୟରେ ଔଚିତ୍ୟ ବିଷୟକ ଚର୍ଚ୍ଚା ପ୍ରଣୟନ କରିଥିଲେ କହିଲେ ଅସତ୍ୟ ବା ଅର୍ଦ୍ଧସତ୍ୟ ହେବ ନାହିଁ । ଅବଶ୍ୟ ସେ ରସବାଦର ସାରବତ୍ତା ବହୁ ପରିମାଣରେ ସ୍ୱୀକାର କରିଛନ୍ତି, ତଥାପି କାବ୍ୟରେ 'ଔଚିତ୍ୟ'ର ସ୍ଥାନ ସମସ୍ତଙ୍କ ଉପରେ ବୋଲି ତାଙ୍କର ସିଦ୍ଧାନ୍ତ । ଯେଉଁଠାରେ ଯେପରି ଅଭିବ୍ୟକ୍ତି ଦ୍ୱାରା କାବ୍ୟର ଉତ୍କର୍ଷ ସାଧିତ ହୁଏ, ତାହା କେବଳ ଔଚିତ୍ୟ ବୋଲି ସେ ନିର୍ଦ୍ଦେଶ କରିଛନ୍ତି । ଔଚିତ୍ୟର ବିଷୟ ସେ ତଳଲିଖିତ ସାହିତ୍ୟିକ ବିଭାଗ ଗୁଡିକୁ ଭିତ୍ତି କରି କହିଛନ୍ତି—ପଦ, ବାକ୍ୟ, ପ୍ରବନ୍ଧାର୍ଥ, ଗୁଣ, ଅଳଂକାର, ରସ, କ୍ରିୟା, କାରକ, ଲିଙ୍ଗ, ବଚନ, ଉପସର୍ଗ, କାଳ, ଦେଶ ଇତ୍ୟାଦି । କବିକଣ୍ଠାଭରଣ

ପାଞ୍ଚଗୋଟି ସନ୍ଧିରେ ବିଭକ୍ତ । ଏଥିରେ ଚତୁର୍ବର୍ଗ ସମ୍ପାଦନର ସରଣୀ ନିର୍ଦ୍ଦେଶିତ ହୋଇଛି । କ୍ଷେମେନ୍ଦ୍ର ଶ୍ରୀଭାରବିଙ୍କ ନାରାୟଣ ଏହା ଉପରେ 'ସହୃଦୟ- ସନ୍ତୋଷିଣୀ' ନାମକ ଏକ ଟୀକା ଲେଖିଥିଲେ ।

କ୍ଷେମେନ୍ଦ୍ରଙ୍କ ବିବରଣୀରୁ ଜଣାଯାଏ, କାଶ୍ମୀର ରାଜା ଅନନ୍ତଙ୍କ ( ଖ୍ରୀ ୧୦୨୮-୧୦୬୩ ) ସମୟରେ କବିକଣ୍ଠାଭରଣ ଲେଖା ଯାଇଥିଲା । ତେଣୁ ସେ ଏକାଦଶ ଶତାବ୍ଦୀର ମଧ୍ୟ ଭାଗର ଲେଖକ ରୂପେ ଅବଧାରିତ ହେବା ସଙ୍ଗତ ।

## ବ୍ୟକ୍ତି ବିବେକ

ଲେଖକ-ମହିମ ଭଟ୍ଟ । ଏହାଙ୍କ ପିତାଙ୍କ ନାମ ଶ୍ରୀ ଧୈର୍ଯ୍ୟ ଏବଂ ସେ କାଶ୍ମୀରୀ ବ୍ରାହ୍ମଣ ଥିବା ଅନୁମାନ କରାଯାଏ । ବ୍ୟକ୍ତି ବିବେକର ତୁଳନା ଧ୍ୱନ୍ୟାଲୋକ ବା ବକ୍ରୋକ୍ତି ଜୀବିତ ସଙ୍ଗେ କେବଳ ସମାଲୋଚନା ଓ ମତ ଖଣ୍ଡନ ଦୃଷ୍ଟିରୁ ଯୁକ୍ତିଯୁକ୍ତ ଭାବରେ କରାଯାଇପାରେ । ଧ୍ୱନ୍ୟାଲୋକରେ ଯେପରି ବିଭିନ୍ନ ବିଷୟର ଦ୍ୱାରା ଧ୍ୱନିବାଦର ପ୍ରତିଷ୍ଠା କରାଯାଇଛି, ବକ୍ରୋକ୍ତି ଜୀବିତରେ ଯେପରି ଅନ୍ୟମାନଙ୍କର ମତ ପରଂପରା ଭ୍ରମପୂର୍ଣ୍ଣଭାବରେ ଖଣ୍ଡିତ ହୋଇଛି, ଏଠାରେ ମଧ୍ୟ ସେହିପରି ହୋଇଛି । ମହିମ ଭଟ୍ଟଙ୍କ ଗୁରୁଙ୍କ ନାମ ହେଉଛନ୍ତି ଶ୍ୟାମଳ ମହିମଭଟ୍ଟ । ସେ ପୁରୁଷାନୁକ୍ରମେ ପଣ୍ଡିତ ବଂଶର ସନ୍ତାନ ଥିବା ଏହା ପ୍ରତୀତ ହୁଏ । ବଂଶ ଗୌରବ ଜ୍ଞାନ ତାଙ୍କର ଯଥେଷ୍ଟ ଥିଲା ଏବଂ ତାଙ୍କର ଗୋଟିଏ ବାକ୍ୟରୁ ଜଣାଯାଏ, ସ୍ୱୀୟ ବିଦ୍ୱାନ ପୁତ୍ରର ପୁତ୍ରମାନଙ୍କ ପାଇଁ ସେ ବ୍ୟକ୍ତି ବିବେକ ପ୍ରଣୟନ କରିଥିଲେ । ବାକ୍ୟଟି ହେଉଛି, "ଅଧଚୁଂ ତ୍ୟୁଭୃଂ ନପ୍ତ୍ରୃଣାଂ କ୍ଷେମ ଯୋଗ ଭୃତାମ୍ ସଦ୍ଧୁ ପ୍ରଥିତ ତନସ୍ୟସ୍ୟ ଭ୍ରମସ୍ୟାପିତ ତୃଣସ୍ୟ ତନୟାନାମ୍" । ସାରକଥା, କ୍ଷେମ ଯୋଗଭକ୍ (ବା 'ଭଜ') ତାଙ୍କ

ନାତିମାନଙ୍କର ପାଣ୍ଡିତ୍ୟ ଉପାର୍ଜନ ଲାଗି ସେ ଏ ଗ୍ରନ୍ଥ ଲେଖିଥିଲେ ।
ଏ ବାକ୍ୟରୁ ଦୁଇଟି ସ୍ପଷ୍ଟ ଅର୍ଥ ପ୍ରକାଶ ହୁଏ । ପ୍ରଥମରେ, କ୍ଷେମଯୋଗ
ପ୍ରଦାନ କରିବା ଯୋଗ୍ୟ ମୋର ନାତିମାନଙ୍କ ପାଇଁ ଲେଖିଲି । ଏଠାରେ
ଗୀତାର "ଯୋଗଂ କ୍ଷେମଂ ବହାମ୍ୟହମ୍" ମନେ ପଡ଼େ । ଅପ୍ରାପ୍ତର
ପ୍ରାପ୍ତି ହେଉଛି ଯୋଗ ଓ ପ୍ରାପ୍ତର ସଂରକ୍ଷଣ ହେଉଛି କ୍ଷେମ ।
ପ୍ରଥମେ ପାଇବାରେ ପ୍ରାପ୍ତିର ସଂରକ୍ଷଣ ଯୁକ୍ତିସଙ୍ଗତ ଏବଂ ଗୀତାର
ଅର୍ଥ କ୍ରମ ଅଭ୍ରାନ୍ତ । ଏପରି ସ୍ଥଳେ ମଧ୍ୟମଭଙ୍ଗ ପରି ଜଣେ ଧୁରୀଣ
ପଣ୍ଡିତ ପ୍ରଥମେ କ୍ଷେମ ରଖି ପରେ ଯୋଗ ଶବ୍ଦ ବିନ୍ୟାସ କଲେ
କାହିଁକି ? ଯଥାସମ୍ଭବ, ଉଲ୍ଲିଖିତ ଦ୍ୱିତୀୟ ଅର୍ଥ ପ୍ରକାଶ
କରିବା ଇଚ୍ଛାରେ । ଦ୍ୱିତୀୟ ଅର୍ଥ ହେଉଛି—ସାଧୁ ସମାଜରେ
ଲବ୍ଧପ୍ରତିଷ୍ଠ ବହୁ ଗୁଣଶାଳୀ ମୋର ପୁଅ ଶ୍ରୀମର କ୍ଷେମ,
ଯୋଗ ଓ ଭୃଙ୍ଗ ନାମକ ତିନି ପୁଅଙ୍କର ପାଣ୍ଡିତ୍ୟ ଉପାର୍ଜନ ଲାଗି ଏ
ଗ୍ରନ୍ଥ ଲେଖିଲି । ଗ୍ରନ୍ଥଟି ତିନିଗୋଟି ବିମର୍ଶରେ ବିଭକ୍ତ । ତଳେ
ଏହି ବିଷୟ ସୂଚୀ ଦିଆଗଲା ।—

ପ୍ରଥମ ବିମର୍ଶ :—ଅନ୍ୟମାନେ ଧ୍ୱନିର ଯେପରି ଲକ୍ଷଣ
କରନ୍ତି, ତାର ଖଣ୍ଡନ । ବ୍ୟଞ୍ଜନା ଶକ୍ତିର ସତ୍ତା ସେ ସ୍ୱୀକାର ନ
କରି କହନ୍ତି, ଶବ୍ଦର କେବଳ ଦୁଇଟି ଅର୍ଥ ବା ଶକ୍ତି ଅଛି—ବାଚ୍ୟ
ଓ ଅନୁମେୟ । ଅନ୍ୟମାନଙ୍କର ଲକ୍ଷଣା, ବ୍ୟଞ୍ଜନା ଓ ଧ୍ୱନ୍ୟାଲୋକର
ଧ୍ୱନି ମଧ୍ୟ ଅନୁମେୟର ଅନ୍ତର୍ଗତ । ବକ୍ରୋକ୍ତି ମଧ୍ୟ ପ୍ରତ୍ୟକ୍ଷର
ଅବରୋଧରେ ଅନୁମେୟର ଏକ ଅଙ୍ଗ ।

ଦ୍ୱିତୀୟ ବିମର୍ଶ—'ଅନୌଚିତ୍ୟ'ର ବିଚାର—ଏହାର ଭେଦ
ଅର୍ଥ ବିଷୟକ ଓ ଶବ୍ଦ ବିଷୟକ—ଅନ୍ତରଙ୍ଗ ଓ ବହିରଙ୍ଗ ଔଚିତ୍ୟ।
ବହିରଙ୍ଗ ଔଚିତ୍ୟର ଦୋଷ ପଞ୍ଚକ ଉପରେ ବିସ୍ତୃତ ବିଚାର—

ପ୍ରଥମ ଭେଦ, କମଭେଦ, ପୌନରୁକ୍ତ୍ୟ, ବାଚ୍ୟାବଚନ, ଵଧେୟାଵମର୍ଶ ।

ଭୃତୀୟ ବମଣ—ଧ୍ୱନ୍ୟାଲୋକରେ ଧ୍ୱନିର ପ୍ରାଧାନ୍ୟ ପ୍ରତି-ପାଦନ କରିବାକୁ ଯାଇ ଆନନ୍ଦବର୍ଦ୍ଧନ ଯେଉଁ ସବୁ ଶ୍ଳୋକ ଉଦା-ହରଣ ଦେଇଛନ୍ତି, ମହିମ ଭଟ୍ଟ ସେ ମଧ୍ୟରୁ ପ୍ରାୟ ୪୦ ଶ୍ଳୋକ ନିଜ ଗ୍ରନ୍ଥରେ ଉଦ୍ଧାର କରି ସୂକ୍ଷ୍ମସୂକ୍ଷ୍ମ ଭାବେ ଦର୍ଶାଇଛନ୍ତି ଯେ ତହିରେ ତଥାକଥିତ ଧ୍ୱନିର ସତ୍ତା ନାହିଁ । ସବୁ କେବଳ ସେଇ ଅନୁମାନର ଦୃଷ୍ଟାନ୍ତ ।

## ନବୀକତା

ବକ୍ରୋକ୍ତି ଜୀବିତକାର ଯେସବୁ ଲକ୍ଷଣା ବ୍ୟଞ୍ଜନା ପ୍ରଭୃତିଙ୍କୁ ବକ୍ରୋକ୍ତି ଅନ୍ତର୍ଗତ କରି ଦେଇଛନ୍ତି, ସେହିସବୁ ମହିମଭଟ୍ଟ ଏ ସବୁ ସହିତ ରସ ମଧ୍ୟ ଅନୁମାନର ଅନ୍ତର୍ବର୍ତ୍ତୀ ଓ ଅନୁମାନ ମୂଳରେ ଉପଲଭ୍ୟ ବୋଲି ସ୍ଥିର କରିଛନ୍ତି । ସେ ତତ୍ତ୍ୱ ବବେକ ନାମରେ ଆଉ ଖଣ୍ଡିଏ ଗ୍ରନ୍ଥ ଲେଖିଥିଲେ । ତାଙ୍କର ଅଗାଧ ପାଣ୍ଡିତ୍ୟର ଜ୍ୱଳନ୍ତ ଦୃଷ୍ଟାନ୍ତ ଦେବା ଲକ୍ଷରେ ଧ୍ୱନ୍ୟାଲୋକର ସେ କରିଥିବା ସମାଲୋଚନା ଉପ-ସ୍ଥାପନ କରାଯାଇ ପାରେ । ଧ୍ୱନ୍ୟାମୃବାଦର ପ୍ରତିଷ୍ଠାତା ଆନନ୍ଦ ବର୍ଦ୍ଧନଙ୍କୁ ମହିମଭଟ୍ଟ ଅଛା କରି କହିଛନ୍ତି —କଂଚ କାବ୍ୟସ୍ୟ ସ୍ୱରୂପଂ ବ୍ୟୁତ୍ପା ଦୟିତୁକାମେନ ମତିମତା ତତ୍ଲକ୍ଷଣମେବ ସାମାନ୍ୟେନା ଖ୍ୟାତବ୍ୟଂ ଯତ୍ ଉଦନାଖ୍ୟାପୈ ବିଶେଷୟୋଃ ପ୍ରଧାନେତର ଭାବକଳ୍ପନେନ ପ୍ରକାର ଦ୍ୱୟ ମୁକ୍ତଂ ତଦପ୍ରତ୍ୟେକଙ୍କମେବ । ସ୍ଥୂଳରେ କହିବାକୁ ଗଲେ ଏହାର ସାରମର୍ମ ହେଉଛି ଯେଉଁ ଲେଖକ କାବ୍ୟର ଏକ ସାଧାରଣ ଲକ୍ଷଣ ପର୍ଯ୍ୟନ୍ତ ନିର୍ଦ୍ଦେଶ କରି ନାହାନ୍ତି, ସେ ପୁଣି ଧ୍ୱନି ଓ ଗୁଣୀଭୂତ ବ୍ୟଙ୍ଗ୍ୟ (ପ୍ରଧାନ ଓ ତଦିତର) ସମ୍ପର୍କରେ ଗ୍ରନ୍ଥ ଏ ଲେଖି ଯାଇଛନ୍ତି । ଧ୍ୱନିକାର 'ବବକ୍ଷିତା ନ୍ୟପରବାଚ୍ୟ'ର ଯେଉଁ

ବସ୍ତୁର କରିଛନ୍ତି, ମହିମଭଟ୍ଟ ତାହା ସହିତ ଏକମତ ହେବା ହୁଏତ ଥିବ ପ୍ରଥମେ 'ବିବକ୍ଷିତାନ୍ୟ ପରବାଚ୍ୟ' ଏ ଶବ୍ଦଟି ଠିକ୍ ନୁହେ ବୋଲି ଖଣ୍ଡନ କରିଛନ୍ତି । ତାଙ୍କ ମତରେ ଯାହା ବିବକ୍ଷିତ ବା ପ୍ରଧାନ ସେ କଦାପି 'ଅନ୍ୟପର' ହୋଇପାରିବ ନାହିଁ । ଧ୍ୱନ୍ୟାଲୋକ ସହିତ ସେ ଉକ୍ରୋକ୍ତିଟ, ବକ୍ରୋକ୍ତି ଜୀବିତର ମତ ମଧ୍ୟ ତୀବ୍ରଭାବରେ ଖଣ୍ଡନ କରିଛନ୍ତି । ସେ ଉଲ୍ଲେଖ କରିଥିବା ଗ୍ରନ୍ଥ ବା ଗ୍ରନ୍ଥକାରଙ୍କ ନାମ ମଧ୍ୟରେ ଅକ୍ଷପାଦ, ଦଣ୍ଡୀ, ବାମନ, ସୌଗତ, ଚନ୍ଦ୍ରମଲ ଏବଂ ଧର୍ମକୀର୍ତ୍ତି ଅନ୍ୟତମ । ବ୍ୟକ୍ତିବିବେକ ଏକ ଟୀକା ସଙ୍ଗେ ପ୍ରକାଶ ପାଇଛି । କିନ୍ତୁ ତାହା ସମ୍ପୂର୍ଣ୍ଣ ନୁହେ କି ତହିଁରୁ ଟୀକାକାରଙ୍କ ନାମ ଜାଣିବାର ଉପାୟ ନାହିଁ । ସେ ଧ୍ୱନ୍ୟାଲୋକ ଏବଂ ବକ୍ରୋକ୍ତି ଜୀବିତର ସମାଲୋଚନା କରିଥିବାରୁ ଏବଂ ଦ୍ୱାଦଶ ଶତାବ୍ଦୀରେ ଲିଖିତ ଅଳଂକାର ସର୍ବସ୍ୱ ତାଙ୍କର କେତେକ ଅଂଶ ଉଦ୍ଧାର କରିଥିବାରୁ ସେ ଏକାଦଶ ଶତାବ୍ଦୀର ଦ୍ୱିତୀୟ ଅର୍ଦ୍ଧରେ ଜୀବିତ ଥିବା ସମ୍ଭବ ।

## କାବ୍ୟ-ପ୍ରକାଶ

ମମ୍ମଟ କାବ୍ୟ ପ୍ରକାଶର ଲେଖକ । ଅଳଂକାର ଜଗତରେ ଏ ଗ୍ରନ୍ଥର ମହାନୀୟତା ତାହାର ଅର୍ଦ୍ଧ ଶତାଧିକ ଟୀକାରୁ ବେଶ୍ ଜଣାଯାଏ । ଏଥିରେ ବିଷୟବସ୍ତୁର ପରିସର ବିଶାଳ ହେଲେ ମଧ୍ୟ କାରିକାର ସଂଖ୍ୟା ମୋଟେ ୧୪୨ । ଏହା ଦଶ ଉଲ୍ଲାସରେ ବିଭକ୍ତ । ତଳେ ଗ୍ରନ୍ଥଟିର ଏକ ସଂକ୍ଷେପ ସୂଚୀ ପ୍ରଦତ୍ତ ହେଲା :—

ପ୍ରଥମ ଉଲ୍ଲାସ—କାବ୍ୟ, କାବ୍ୟହେତୁ, ଉତ୍ତମ ମଧ୍ୟମାଧମ ଭେଦରେ
କାବ୍ୟ ବିଭାଗ ।

ଦ୍ୱିତୀୟ „ —ଭେଦକ୍ରେ, ବାଚକ, ଲକ୍ଷଣିକ ଓ ବ୍ୟଞ୍ଜକ ଅର୍ଥ ।

ତୃତୀୟ ଉଲ୍ଲାସ—ବ୍ୟଞ୍ଜନାର ବସ୍ତୃତ ବିଚାର।
୪ର୍ଥ „ —ଧ୍ୱନିଭେଦ—ଅବିବକ୍ଷିତ ବାଚ୍ୟ—ବିବକ୍ଷିତାନ୍ୟ ପର ବାଚ୍ୟ।
୫ମ „ —ଗୁଣୀଭୂତ ବ୍ୟଙ୍ଗ୍ୟ ଓ ତାହାର ଆଠଭେଦ।
୬ଷ୍ଠ „ —ଚିତ୍ରକାବ୍ୟ-ଶବ୍ଦ ଓ ଅର୍ଥଚିତ୍ର।
୭ମ „ —ଦୋଷ—ପଦଗତ ବାକ୍ୟଗତ ଓ ଅର୍ଥଗତ।
୮ମ „ —ଗୁଣ ଓ ଅଳଂକାରର ଭେଦ।
୯ମ „ —ଶବ୍ଦାଳଂକାର ଓ ବୃତ୍ତିତ୍ରୟ-ଉପନାଗରିକା, ପରୁଷା, କୋମଳା।
୧୦ମ „ —ଅର୍ଥାଳଂକାର ପ୍ରକରଣ।

କାବ୍ୟ ପ୍ରକାଶକାର ପୂର୍ବବର୍ତ୍ତୀ ଲେଖକମାନଙ୍କର ପ୍ରାୟ ଛଅଶହ ଶ୍ଳୋକ ଉଦ୍ଧାର କରିଛନ୍ତି। ଅନ୍ୟମାନଙ୍କର ମତକୁ ସେ ଗ୍ରନ୍ଥ ପ୍ରଣୟନବେଳେ ଅବଲମ୍ବନ କରିଥିଲେ ମଧ୍ୟ ଅନେକ ସ୍ଥଳରେ ସ୍ୱାଧୀନମତ ବ୍ୟକ୍ତକରି ପରକ୍ଷରେ ମତାନ୍ତର ନିରାକରଣ ଚେଷ୍ଟା କରିଛନ୍ତି। ଏହାର କେତେ ଗୋଟି ଦୃଷ୍ଟାନ୍ତ ତଳେ ଦିଆଗଲା—

(କ) ନବମ ଉଲ୍ଲାସରେ ଶ୍ଳେଷ ଅଳଂକାର ସମ୍ପର୍କରେ ନବ ଉଦ୍ଭଟଙ୍କର ମତ ଖଣ୍ଡନ କରିଛନ୍ତି।

(ଖ) ଧନ୍ୟାତ୍ମ ଲୋକରେ ଆଲୋଚିତ ସଦ୍ୟ "ମନୋରମାନାମ"— ଶ୍ଳୋକ ଉଦ୍ଧାର କରି ତାହାର ଦୋଷ ଦେଖାଇଛନ୍ତି।

(ଗ) ସପ୍ତମ ଉଲ୍ଲାସରେ ରୁଦ୍ରଟଙ୍କ ଲେଖାର ବହୁଅଂଶ ଉଦ୍ଧାର କରି ସେ ଗୁଡ଼ିକର ଦୋଷ-ଦୁଷ୍ଟତା ପ୍ରତିପାଦନ କରିଛନ୍ତି।

(ଘ) ବାମନ ଗୁଣ ଓ ଅଳଂକାର ମଧ୍ୟରେ ଯେଉଁ ଭେଦ ଦର୍ଶାଇଛନ୍ତି ମମ୍ମଟ ତାହାର ସମାଲୋଚନା କରିଛନ୍ତି ।

(ଙ) ଅଷ୍ଟମ ଉଲ୍ଲାସରେ ସେ ଭାମହଙ୍କ ଦୋଷ ଦେଖାଇଛନ୍ତି ଯଦ୍ୟପି ଷଷ୍ଠ ଉଲ୍ଲାସ ଓ ଅନ୍ୟ କେତେକ ଉଲ୍ଲାସରେ ଭାମହଙ୍କ ମତ ସମର୍ଥନ କରିଛନ୍ତି ।

## ଦୁଇଟି ସମସ୍ୟା

କାବ୍ୟ ପ୍ରକାଶର ଦୁଇଟି ବଡ ସମସ୍ୟା ଅଦ୍ୟାବଧି ଅନୁସନ୍ଧିତ୍ସୁ ମାନଙ୍କର ଏକ ସନ୍ଦେହ ସଙ୍କୁଳ ତର୍କର ସ୍ଥଳୀ ହୋଇଛି ପ୍ରଥମଟି ଗ୍ରନ୍ଥର କାରିକା ସମ୍ବନ୍ଧରେ ଓ ଅନ୍ୟଟି ଗ୍ରନ୍ଥକର୍ତ୍ତାଙ୍କ ଅନୈକ୍ୟ ବା ବହୁତ୍ୱ ସମ୍ପର୍କରେ । ଏଥିପୂର୍ବ କୁହାଯାଇଛି କାବ୍ୟ ପ୍ରକାଶର କାରିକା ଗୁଡ଼ିକର ସଂଖ୍ୟା ୧୪୨ । ଏ ସବୁ କାରିକା ବାସ୍ତବରେ ମମ୍ମଟ ଲେଖିଥିଲେ ନା ଅନ୍ୟର ରଚିତ କାରିକା ଉପରେ ମମ୍ମଟ କେବଳ ଆଲୋଚନା କଲେ ? ନିମ୍ନଲିଖିତ ପ୍ରମାଣରୁ ଜଣାଯାଏ, ଭରତ ହିଁ ଉକ୍ତ ଗ୍ରନ୍ଥ କାରିକା ଗୁଡ଼ିକର ପ୍ରଣେତା ଏବଂ ମମ୍ମଟ କେବଳ ଜଣେ ବୃତ୍ତିକାର ।

(କ) କାରିକା ଗୁଡ଼ିକ ଭରତ ପ୍ରଣୀତ ବୋଲି ସାହିତ୍ୟ କୌମୁଦୀରେ ବିଦ୍ୟା ଭୂଷଣ ଲେଖିଛନ୍ତି ।

[ଖ] ମହେଶ୍ୱର ସ୍ୱୀୟ ସାହିତ୍ୟ ସର୍ବସ୍ୱରେ [ଏହା ବାମନଙ୍କ କାବ୍ୟାଳଂକାର ସୂତ୍ର ଉପରେ ଏକ ଟୀକା] ଲେଖିଛନ୍ତି ଯେ କାବ୍ୟପ୍ରକାଶର କାରିକା ଗୁଡ଼ିକ ଭରତ ରଚିତ ।

[ଗ] ଜୟ ଗମଙ୍କ 'ଶଳକ'ରେ [ଏହା କାବ୍ୟ ପ୍ରକାଶର ଏକ ଟୀକା] ମଧ୍ଯ ଠିକ୍ ଏହି କଥା ଲେଖାଯାଇଛି ।

## ଯୁକ୍ତିର ଅନ୍ୟ ଦିଗ—

ଏ ସବୁ ଦେଖିଲେ ଏହା ସତ୍ୟ ପରି ପ୍ରତୀତ ହୁଏ ଯେ ବାସ୍ତବରେ ଭରତ କାରିକା ଗୁଡ଼ିକ ରଚନା କରିଥିଲେ । ଏହା ଯେବେ ସ୍ୱୀକାର କରା ନ ଯିବ ତେବେ ଉଲ୍ଲିଖିତ ମତ ଗୁଡ଼ିକର ଅମୂଳକତା ପ୍ରମାଣିତ କରିବା ଆବଶ୍ୟକ ହୋଇ ପଡ଼ିବ । ଏଠାରେ ଏତିକିମାତ୍ର କହିଲେ ଯଥେଷ୍ଟ ହେବ ଯେ ବହୁ ଅନୁସନ୍ଧିତ୍ସୁ ଉକ୍ତ ମତ ବିରୁଦ୍ଧରେ ଏକ ଅଭିଯାନ ଚଳାଇଛନ୍ତି । ସେମାନଙ୍କର ଉପ-ସ୍ଥାପିତ ଯୁକ୍ତିଗୁଡ଼ିକର ସାରକଥା ଅବଗତର ସୌକର୍ଯ୍ୟ ନିମନ୍ତେ ତଳେ ବର୍ଣ୍ଣିତ ହେଲା ।

[କ] କାବ୍ୟପ୍ରକାଶରେ କାବ୍ୟର ରସାତ୍ମବାଦ ପ୍ରତିଷ୍ଠିତ ହୋଇଛି । ଭରତ ନାଟ୍ୟଶାସ୍ତ୍ର ଆର୍ଷଗ୍ରନ୍ଥରୂପେ ପଣ୍ଡିତ ମଣ୍ଡଳୀରେ ସମ୍ମାନିତ ଓ ସମାଦୃତ ହୋଇ ଆସୁଥିବାରୁ ଏବଂ ତହିଁରେ ସର୍ବପ୍ରଥମେ ରସାତ୍ମବାଦ ବୀଜର ଅଙ୍କୁରୋଦ୍‌ଗମ ହୋଇ-ଥିବାରୁ କାବ୍ୟ ପ୍ରକାଶକାର ତାଙ୍କ ପଦାଙ୍କ ଅନୁସରଣ କରିଛନ୍ତି । ଫଳରେ ଭରତଙ୍କ ବହୁ ସୂତ୍ରର ପ୍ରଭାବ ମମ୍ମଟଙ୍କ ଉପରେ ପଡ଼ିଛି । ବୋଧହୁଏ ତନ୍ନିଗତ ଏତାଦୃଶ ସାମ୍ୟ ଦେଖି କେତେକଙ୍କର ଭ୍ରାନ୍ତ ଧାରଣା ଜନ୍ମିଛି ଯେ ସବୁ ମୂଳ ଭରତ ଲେଖିଥିଲେ ।

(ଖ) ଅନେକ ସ୍ଥଳରେ ଦେଖାଯାଏ, କାବ୍ୟ ପ୍ରକାଶର କାରିକା ଉପରେ ଭରତ ଭିନ୍ନ ଅନ୍ୟମାନଙ୍କର ପ୍ରଭାବ ପଡ଼ିଛି, ଏପରି

କ୍ଷ ଭରତ ଶାସ୍ତ୍ରରେ ସେମାନଙ୍କ ମୂଳ ଆଦୌ ପ୍ରଦର୍ଶିତ ହୋଇ ପାରିବ ନାହିଁ । କାବ୍ୟ ପ୍ରକାଶ ସପ୍ତମ ଉଲ୍ଲାସର ନିମ୍ନୋଦ୍ଧୃତ କାରିକାଟି ବାମନଙ୍କର ଏକ ଅନୁକୃତ ମାତ୍ର:—

"କର୍ଣ୍ଣା ବତଂସାଦି ପଦେ କର୍ଣ୍ଣାଦି ଧ୍ୱନି ନିର୍ମିତଃ
ସଂନିଧାନାଦି ବୋଧାର୍ଥଂ......"

କାରଣ ବାମନଙ୍କର ବାକ୍ୟଟି ହେଉଛି:—"କର୍ଣ୍ଣାବତଂସ ଶ୍ରବଣ କୁଣ୍ଡଳ ଶିରଃ ଶେଖରେଷୁ କର୍ଣ୍ଣାଦି ନିର୍ଦ୍ଦେଶଃ ସନ୍ନିଧେଃ ।" ଏହାର ମୂଳ ଭରତ ନାଟ୍ୟଶାସ୍ତ୍ରରେ ଦୁଷ୍ପ୍ରାପ୍ୟ ।

(ଗ) ବୃତ୍ତିସୂତ୍ରରେ ପ୍ରାଚୀନ ଯେ କୌଣସି ଗ୍ରନ୍ଥ ଦେଖିଲେ ଜଣାଯାଏ, ଲେଖକମାନେ ପ୍ରଥମେ ମଙ୍ଗଳାଚରଣ କରିଥାନ୍ତି । ଯେବେ ଅନ୍ୟର ଗ୍ରନ୍ଥ ଉପରେ ମମ୍ମଟ କେବଳ ବୃତ୍ତି ପ୍ରଣୟନ କରିଥାନ୍ତେ ତେବେ ତାଙ୍କର ସ୍ୱତନ୍ତ୍ର ମଙ୍ଗଳାଚରଣ ଥିବାର କଥା ।

(ଘ) ମମ୍ମଟ କୌଣସିଠାରେ ଲେଖି ନାହାନ୍ତି ଯେ ସେ ଅନ୍ୟର ଗ୍ରନ୍ଥ ଉପରେ ଏକ ଟୀକା ଲେଖିଛନ୍ତି ମାତ୍ର ।

(ଙ) ଚତୁର୍ଥ ଉଲ୍ଲାସର "କାରଣାନ୍ୟଥ କାର୍ଯ୍ୟାଣି" ପ୍ରଭୃତି କାରିକାର ଆଲୋଚନା ବେଳେ ଭରତ ଏପରି କହିଛନ୍ତି ବୋଲି (ତଦୁକ୍ତଂ ଭରତେନ) ଲେଖାଥିବାରୁ ସ୍ପଷ୍ଟ ଜଣାଯାଉଛି, କାରିକାର ଲେଖକ ଭରତଙ୍କଠାରୁ ସର୍ବଥା ଭିନ୍ନ ।

(ଚ) ଏହା ଛଡ଼ା ମାଣିକ୍ୟଚନ୍ଦ୍ର, ଜୟନ୍ତ, ସୋମେଶ୍ୱର, ସରସ୍ୱତୀ-ତୀର୍ଥ ପ୍ରମୁଖ କୌଣସି ଟୀକାକାର ଭରତଙ୍କୁ କାବ୍ୟ ପ୍ରକାଶ କାରିକାର ଅଂଶର ପ୍ରଣେତାରୂପେ ଉଲ୍ଲେଖ କରି ନାହାନ୍ତି ।

(ଛ) ଶେଷରେ ଛନ୍ଦ ମୀମାଂସା ଓ ରସ ଗଙ୍ଗାଧର ପର ପ୍ରାମାଣିକ ଗ୍ରନ୍ଥରେ ମମ୍ମଟ କାବ୍ୟ୍ୟର ପ୍ରଣେତା ବୋଲି ସ୍ପଷ୍ଟ ସ୍ୱୀକାର କରା ଯାଇଛି ।

## ଦ୍ୱିତୀୟ ସମସ୍ୟା—

କାବ୍ୟ ପ୍ରକାଶର ଲେଖକ ଜଣେ ନା ଦୁଇଜଣ ? ଅର୍ଥାତ୍ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ଜଣେ ଲେଖିଛି ନା ବଦ୍ଧ୍ୟରେ ଭଉନ୍ନ ଅଂଶ ଦୁଇଜଣ ଲେଖିଛନ୍ତି ? ଗୋଟିଏ ମତ ଅନୁସାରେ ମମ୍ମଟ କାବ୍ୟ-ପ୍ରକାଶ ଆରମ୍ଭ କରିଥିଲେ ସତ୍ୟ, ମାତ୍ର ବର୍ତ୍ତମାନ ତାଙ୍କ ନାଁରେ ଖ୍ୟାତି ପାଇଥିବା ଗ୍ରନ୍ଥଟିର ସମଗ୍ର ଅଂଶ ସେ ଲେଖି ନାହାନ୍ତି । ସ୍ୱଇନକାନାନ୍ଦ ସ୍ୱୀୟ କାବ୍ୟ-ପ୍ରକାଶ ନିଦର୍ଶନରେ ଲେଖିଛନ୍ତି ଯେ, ମମ୍ମଟ କାବ୍ୟପ୍ରକାଶର କେବଳ 'ପରିକର' ଅଳଂକାର ପର୍ଯ୍ୟନ୍ତ ଲେଖିଥିଲେ ଏବଂ ପରେ 'ଅଲ୍ଲଟ' ନାମକ ଜଣେ ପଣ୍ଡିତ ସେଠାରୁ ଆରମ୍ଭ କରି ସମାପ୍ତି ପର୍ଯ୍ୟନ୍ତ ଲେଖିଲେ । ଅଧ୍ୟାପକ ଭଣ୍ଡାର-କରଙ୍କ ବିବରଣୀରୁ ଜଣାଯାଏ, ତାଙ୍କ ହସ୍ତଗତ ଏକ ପାଣ୍ଡୁଲିପିରେ ମମ୍ମଟ ଓ ଅଲକ ଏ ଉଭୟେ କାବ୍ୟ ପ୍ରକାଶର ପ୍ରଣେତା ବୋଲି ଲେଖା ଅଛି । ଅର୍ଜୁନ ବର୍ମ ଦେବଙ୍କର ଅମରୁ-ଶତକ ଟୀକାରେ ମଧ୍ୟ ଏ କଥାର ସମର୍ଥନ ମୂଳକ ସୂଚନା ଦେଖାଯାଏ । କେତେକଣ ପାଶ୍ଚାତ୍ୟ ଅନୁସନ୍ଧିତ୍ସୁଙ୍କ (ଯଥା:—ଡକ୍ଟର ବୁଲର୍ ଓ ଜେକୋବି) ମତରେ ଅଲକ ପରିକରଠାରୁ ଅନୁଷ୍ଟ କରିବା ଅଧିକ ସମୀଚୀନ । ଏ ମତବାଦର ବିରୋଧୀମାନେ କହନ୍ତି, 'ଅଲକ'ଙ୍କ ପ୍ରଣେତୃତ୍ୱ କୌଣସି ଏକ ଭିତ୍ତିହୀନ କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ । କାବ୍ୟ ପ୍ରକାଶ ପାଠକଲେ ଆଦ୍ୟରୁ ପ୍ରାନ୍ତଯାଏ ସବୁ ଜଣକର ଲେଖନୀ ନିଃସୃତ ବୋଲି ମନେ ହୁଏ । ଆଶା କରାଯାଏ ଗବେଷଣାର

ପ୍ରସାର ଫଳରେ ନିକଟ ଭବିଷ୍ୟତରେ ଏ ବିବାଦ ମୂଳ ମତର ସମାପ୍ତି ଘଟିବ ।

ମମ୍ମଟ ଜଣେ ବୈୟାକରଣ ଥିଲେ ଏବଂ "ଶବ୍ଦ ବ୍ୟାପାର ବିଚାର" ନାମକ ଏକ ବ୍ୟାକରଣ ଗ୍ରନ୍ଥ ଲେଖି ଥିଲେ । ମମ୍ମଟଙ୍କ ପରିଚୟ ଦେବା ସହଜସାଧ୍ୟ ନୁହେଁ । ମତବହୁଳତା ମଧ୍ୟରେ ତଥ୍ୟାତଥ୍ୟ ନିର୍ଣ୍ଣୟ କରିବା ବଡ଼ କଷ୍ଟକର କଥା । କେତେକଙ୍କ ମତରେ ବର୍ଣ୍ଣ୍ୟାତ ନୈଷଧ ଚରିତର ପ୍ରଣେତା ଶ୍ରୀହର୍ଷଙ୍କ ମାତୁଳ ଥିଲେ ମମ୍ମଟ । ଅନ୍ୟ କେତେକଙ୍କ ମତରେ ସୁପ୍ରସିଦ୍ଧ ଭାଷ୍ୟକାର ଉବଟ ମମ୍ମଟଙ୍କ ଭାଇ । କିନ୍ତୁ ଉବଟ ଶ୍ରୀହର୍ଷ ଓ ମମ୍ମଟ ଏମାନଙ୍କ ମଧ୍ୟରୁ କାହାର ବିଷୟରେ ମତ-ଐକ୍ୟ ଦେଖାଯାଏ ନାହିଁ । ପୁଣି ତୃତୀୟ ମତ ହେଉଛି ମହାଭାଷ୍ୟ ପ୍ରଦୀପର ଲେଖକ କୈୟଟ ମଧ୍ୟ ମମ୍ମଟଙ୍କ ଭାଇ । ମମ୍ମଟ ହେଉଛନ୍ତି କୈୟଟଙ୍କ ପୁଅ ବୋଲି ଅଷ୍ଟାଦଶ ଶତାବ୍ଦୀର ଭୀମସେନ ସ୍ୱୀୟ ସୁଧାସାଗରରେ ଯାହା ଲେଖିଛନ୍ତି, ତାହା ନିତାନ୍ତ ହାସ୍ୟାସ୍ପଦ କଥା । ପ୍ରକୃତରେ କୈୟଟ କୈୟଟଙ୍କ ପିତା । ସବୁ ଦେଖିଲେ ପରେ ହୁଏ ନାମରେ କେବଳ 'ଟ' ଦେଖି 'ଟାନ୍' ନ୍ୟାୟ ଗୁଡ଼ିକର ମାଳାଗ୍ରନ୍ଥନ କରାଯାଇଛି ମାତ୍ର । ମହେଶଚନ୍ଦ୍ର ଶର୍ମାଙ୍କ ମତରେ ଗୁଜରାଟର ଶୀବର ଉଲ୍ଲିଖିତ ଧମ୍ମଟଙ୍କ ନାମ ସଙ୍ଗେ ମମ୍ମଟ ନାମର ସାମ୍ୟ ଥିବାରୁ ତାଙ୍କୁ କାଶ୍ମୀରୀ ରୂପେ ଏବଂ ଉଛଥିବାରୁ ମୈଥିଳୀରୂପେ ଗ୍ରହଣ କରାଯାଇପାରେ ।

**ସମୟ—**

କାବ୍ୟ ପ୍ରକାଶରେ ଉଲ୍ଲେଖ କରାଯାଇଥିବା କବି ବା ଗ୍ରନ୍ଥର ନାମ ମଧ୍ୟରେ ଏ ଗୁଡିକ ଉଲ୍ଲେଖ୍ୟ—କାଳିଦାସ, ଉଦ୍‌ଭଟ,

କାମଶାସ୍ତ୍ର, ଧ୍ୱନ୍ୟାଲୋକ, ଶାଙ୍ଗଧର୍ପ, ଲୋଲ୍ଲଟ, ଶଙ୍କୁକ, ମୟୂର, ଭରତ ଓ ଅଭିନବ ଗୁପ୍ତ । ଏତଦ୍‌ବ୍ୟତୀତ ଅନ୍ୟର ପ୍ରାୟ ୧୦୦ ଜଣଙ୍କ ନାମ ସମ୍ପର୍କରେ ଦେଖାଯାଏ । 'ରାଜାନକ' ତାଙ୍କର ଉପାଧି ଥିଲା ଏବଂ ଅଦ୍ୟାପି କାଶ୍ମୀରୀ ବ୍ରାହ୍ମଣମାନଙ୍କର ଏହା ବଂଶପଦରେ ଚଳନ୍ତି । ଧ୍ୱନ୍ୟାଲୋକ ଟୀକାକାର ଖ୍ୟାତ ପଣ୍ଡିତ ଅଭିନବ ଗୁପ୍ତଙ୍କର ମତ ଉଦ୍ଧାର କରିଥିବାରୁ ମମ୍ମଟ ନିଶ୍ଚୟ ଏକାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧର ପୂର୍ବବର୍ତ୍ତୀ ନୁହନ୍ତି । କେତେକ ପ୍ରମାଣରୁ ଜଣାଯାଏ, କାବ୍ୟପ୍ରକାଶ ଭୋଜଙ୍କ ଜୀବନକାଳରେ ଲକ୍ଷିତ ହୋଇଥିଲା । ସେହି ଏକାଦଶ ଶତାବ୍ଦୀର ମଧ୍ୟଭାଗରେ ମାଣିକ୍ୟଚନ୍ଦ୍ର କାବ୍ୟ ପ୍ରକାଶର ଏକ ଟୀକା ଲେଖିଥିବାରୁ ମମ୍ମଟଙ୍କୁ ଏକାଦଶ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧର ଲେଖକରୂପେ ସ୍ଥିର କରିବା ଅଧିକ ଯୁକ୍ତିଯୁକ୍ତ ।

## ଟୀକା ଗ୍ରନ୍ଥ—

କାବ୍ୟପ୍ରକାଶର ବହୁ ଟୀକାକାର ମଧ୍ୟରେ ଏମାନେ ଅନ୍ୟତମ—କମଳାକରଭଟ୍ଟ, କୃଷ୍ଣମିଶ୍ରାଚାର୍ଯ୍ୟ, ଗଦାଧର, ଗୋପୀନାଥଭଟ୍ଟ, ଜୟରାମ, ନାରାୟଣ ଭଟ୍ଟ, ଭବଦେବ, ଯଜ୍ଞେଶ୍ୱର, ରତ୍ନେଶ୍ୱର, ଶିବନାରାୟଣ, ରଘୁଦେବ (ଟୀକା ନାମ, ଅର୍ଥ, ପ୍ରକାଶିକା), ବୈଦ୍ୟନାଥ (ଉଦାହରଣ ଚନ୍ଦ୍ରିକା) ନାଗେଶ ଭଟ୍ଟ, (ଉଦାହରଣ ପ୍ରଦୀପ) ନରସିଂହ ସୂରି (ଋଜୁବୃତ୍ତି) ଦେବନାଥ, ମଧୁମତି ଗଣେଶ, (କାବ୍ୟଦର୍ପଣ) ସୋମେଶ୍ୱରଭଟ୍ଟ, (କାବ୍ୟ ଦର୍ଶ) ମହେଶଚନ୍ଦ୍ର (ତାତ୍ପର୍ଯ୍ୟ ବିବରଣ) ରାଜାନକାନନ୍ଦ (କାଃ ପ୍ରଃ ନିଦର୍ଶନ) ନୃସିଂହ ଠକ୍କୁର, (ନରସିଂହ ମୀମାଂସା) ନରହରି (ବାଲଚିତ୍ତାନୁରଞ୍ଜିନୀ), ମହେଶ୍ୱର (ଭାବାର୍ଥ ଚିନ୍ତାମଣି), କୃଷ୍ଣ ଦ୍ୱିବେଦୀ (ମଧୁର ରସା), କୃଷ୍ଣ ଶର୍ମା (ରସ ପ୍ରକାଶ), ଶ୍ରୀଧର (ରହସ୍ୟ

କାବନ୍ଧ ), ସମନାଥ ( ରହସ୍ୟପ୍ରକାଶ ), ଶିବସମ ( ବିଷମପଦୀ ), ରତ୍ନକଣ୍ଠ ( ସାର ସମୁଚ୍ଚୟ ), ବିଦ୍ୟାଭୂଷଣ ( ସାହିତ୍ୟ କୌମୁଦୀ ), ଭଟ୍ଟ ଗୋପାଳ ( ସାହିତ୍ୟ ଚୂଡ଼ାମଣି ), ଶ୍ରୀବସେନ ( ସୁଧାସାଗର ) ଓ ଗୋପୀନାଥ [ ସୁମନୋମନୋହରା ]

## ଅଲଂକାର—ସର୍ବସ୍ବ

ଅଲଂକାର ଶାସ୍ତ୍ରର ଅଲଂକାର ପ୍ରକରଣ ଉପରେ ରୁଯ୍ୟକ ପୁଙ୍ଖାନୁପୁଙ୍ଖ ଅଲୋଚନା କରି ଉକ୍ତ ଗ୍ରନ୍ଥ ଲେଖିଛନ୍ତି । ସେ ଉକ୍ତ ଗ୍ରନ୍ଥରେ ଅଲଂକାରର ବିସ୍ତୃତ ଆଲୋଚନା କରିଥିଲେ ମଧ୍ୟ ଧ୍ୱନି କାବ୍ୟର ଆତ୍ମା ବୋଲି ସ୍ୱୀକାର କରିଛନ୍ତି । ବାମନ, ମମ୍ମଟ ପ୍ରଭୃତି ଆଲଂକାରିକମାନେ ଯେତେ ଅଲଂକାରର ବର୍ଣ୍ଣନା କରିଛନ୍ତି, ରୁଯ୍ୟକ ସେ ସବୁରେ ନିଜ ଉଦ୍ଭାବିତ ବିକଳ୍ପ ଓ ବିଚିତ୍ର ନାମକ ଦୁଇଟି ନୂତନ ଅଲଂକାର ଯୋଗ କରିଛନ୍ତି । ରୁଯ୍ୟକ ଧ୍ୱନ୍ୟାଲୋକର ଉପାସକ ଥିଲେ ଏବଂ ବହୁ ସ୍ଥଳରେ ଲୋଚନ ଟୀକା ଓ କାବ୍ୟ-ପ୍ରକାଶର ମତ ଉଦ୍ଧାର କରିଛନ୍ତି ।

ସୂତ୍ର, ବୃତ୍ତି ଓ ଉଦାହରଣ ଭେଦରେ ଗ୍ରନ୍ଥଟିର ତିନିଗୋଟି ବିଭାଗ କରାଯାଇ ପାରେ । ରତ୍ନାପଣ ନାମକ ଏକ ଟୀକାରେ ଲେଖା ଅଛି ଯେ ଅଲଂକାର ସର୍ବସ୍ୱର ସୂତ୍ରଭାଗ କେବଳ ରୁଯ୍ୟକ ଲେଖିଥିଲେ ଏବଂ ପରେ ମଙ୍ଖକ ନାମକ ଅନ୍ୟ ଜଣେ ପଣ୍ଡିତ ବୃତ୍ତି ପ୍ରଣୟନ କଲେ । କିନ୍ତୁ ଏହାର ସତ୍ୟତା ବହୁ ଅନୁସନ୍ଧିତ୍ସୁ ସ୍ୱୀକାର କରନ୍ତି ନାହିଁ । ରୁଯ୍ୟକଙ୍କର ପ୍ରାୟ ୫୦ ବର୍ଷ ପରେ ଜୟରଥ ଲେଖିଛନ୍ତି ଯେ ସୂତ୍ରବୃତ୍ତି ସବୁ ରୁଯ୍ୟକ

ରଚନା କରିଥିଲେ । ଯଥାସମ୍ଭବ ରତ୍ନାପଣକାର ବହୁ ପରବର୍ତ୍ତୀ ହେବାରୁ [illegible]ାଦ୍ଧାଠାରୁ ଶୁଣି ତାହାଙ୍କରେ ବିଶ୍ୱାସ ସ୍ଥାପନ କରି ଏପରି କଥାଏ ଲେଖିଗଲେ । ରୁଯ୍ୟକ ଯେପରି ଆଲଂକାରିକ, ସେହିପରି ସାହିତ୍ୟଜ୍ଞ ଓ କବି ଥିଲେ । ଅଲଂକାର ସର୍ବସ୍ୱ ଛଡ଼ା ସେ ଅଲଂକାରାନୁସାରିଣୀ, କାବ୍ୟ ପ୍ରକାଶ ସଂକେତ, ନାଟକ ମୀମାଂସା, ବ୍ୟକ୍ତି ବିବେକ ବିଚାର, ଶ୍ରୀକଣ୍ଠ ସ୍ତବ, ସହୃଦୟ ଲୀଳା, ସାହିତ୍ୟ ମୀମାଂସା ଓ ହର୍ଷଚରିତ-ବାର୍ତ୍ତିକ ।

## ଉଲ୍ଲିଖିତ ଗ୍ରନ୍ଥ ନାମ

ବିକ୍ରମ ଦେବ ଚରିତ, ଅଲଂକାର ମଞ୍ଜରୀ, ଶ୍ରୀକଣ୍ଠ ଚରିତ, ହରିଶ୍ଚନ୍ଦ୍ର ଚରିତ, ବାମନ, ଭାମହ, ଉଦ୍‌ଭଟ ପ୍ରଭୃତିଙ୍କର ବହୁ ଶ୍ଲୋକ ଓ ମତ ରୁଯ୍ୟକ ଉଦ୍ଧାର କରିଛନ୍ତି । ବ୍ୟକ୍ତି ବିବେକ ବିଚାରରୁ ଜଣାଯାଏ ବୃହତୀ ନାମକ ଅନ୍ୟ ଏକ ଗ୍ରନ୍ଥ ରଚନା କରିବାକୁ ସେ ମନସ୍ଥ କରିଥିଲେ । ଜୟଦେବଙ୍କ 'ବିବରଣୀ' ଟୀକା ଅନୁସାରେ ଅଲଂକାରାନୁସାରିଣୀ ମଧ୍ୟ ଗୋଟିଏ ସୁନ୍ଦର (କେବଳ ଅଲଂକାର ବିଚାରାତ୍ମକ) ଗ୍ରନ୍ଥ । କିନ୍ତୁ ଉକ୍ତ ଦୁଇଟି 'ଅଲଂକାର' ଗ୍ରନ୍ଥ ଅପେକ୍ଷା ରୁଯ୍ୟକଙ୍କର ସହୃଦୟ ଲୀଳାର ସ୍ଥାନ ସମଗ୍ର ସଂସ୍କୃତ ସାହିତ୍ୟରେ ବହୁ ଉଚ୍ଚରେ । ଗ୍ରନ୍ଥଟି ଚାରିଭାଗରେ ବିଭକ୍ତ । ପ୍ରଥମ ଉଲ୍ଲେଖ ନାରୀମାନଙ୍କ ସୌନ୍ଦର୍ଯ୍ୟର ମୂଳ ନିରୂପଣ, ୨ୟରେ ବିଭିନ୍ନ ଧାତୁ ନିର୍ମିତ ଅଲଂକାରର ବ୍ୟବହାର, ୩ୟରେ ଯୌବନାବସ୍ଥାର ମାଧୁର୍ଯ୍ୟ ଓ ମହତ୍ତ୍ୱ ଏବଂ ଶେଷ ଉଲ୍ଲେଖରେ ଜନ-ମନୋ-ରଞ୍ଜନ-ସୌନ୍ଦର୍ଯ୍ୟ ସମ୍ପାଦନ ସମ୍ପର୍କରେ ନାନା କଥା କୁହାଯାଇଛି । ବାସ୍ତବରେ ପ୍ରତ୍ୟେକ ଉଲ୍ଲେଖର ବିଷୟବସ୍ତୁ ପାଠକର ଚିତ୍ତ ଉଲ୍ଲାସକ ହୋଇଥାଏ ।

ଅଳଂକାରମାନଙ୍କର ଧାରାବାହିକ ବର୍ଗର କରାଯାଇଥିବାରୁ ଅଳଂକାର ସର୍ବସ୍ୱର ଏକ ସୂଚୀ ଦେବା ସୁବିଧା ଜନକ ନୁହେଁ ତେବେ ଆଲୋଚନାର କ୍ରମ ନିର୍ଦ୍ଦେଶ କରାଯାଇ ପାରେ । ପ୍ରଥମେ ଧ୍ୱନ୍ୟାଲୋକ ପ୍ରଭୃତି ବହୁ ଗ୍ରନ୍ଥର କାବ୍ୟାତ୍ମବାଦ ସମ୍ପର୍କୀୟ ମତୋଦ୍ଧାର କରାଯାଇ ଧ୍ୱନିବାଦର ପ୍ରତିଷ୍ଠା କରାଯାଇଛି । ପରେ ପୁନରୁକ୍ତ ବଦାଭାସ, ଛେକାନୁପ୍ରାସ, ବୃତ୍ତ୍ୟାନୁପ୍ରାସ, ଯମକ, ଲାଟାନୁପ୍ରାସ ଓ ଚିତ୍ର ପ୍ରଭୃତି ଶବ୍ଦାଳଙ୍କାରର ସୂତ୍ର, ବୃତ୍ତି ଓ ଉଦାହରଣ କ୍ରମରେ ଆଲୋଚନା କରାଯାଇ ପରେ ୭୫ ଗୋଟି ଅର୍ଥାଳଂକାରର ଚର୍ଚ୍ଚା ହୋଇଛି । ମମ୍ମଟଙ୍କ ତୁଳନାରେ ରୁଯ୍ୟକ ପରିଣାମ, ରସବତ୍, ପ୍ରେୟଃ, ଊର୍ଜସ୍ୱୀ, ସମାହିତ, ଭାବୋଦୟ, ଭାବସନ୍ଧି, ଭାବଶବଳ, ବିକଳ୍ପ ଓ ବିଚିତ୍ର— ଏ ଦଶଟି ଅଳଂକାର ଅଧିକ ଲେଖିଛନ୍ତି । ପରବର୍ତ୍ତୀ ଲେଖକମାନେ ବିଶେଷରେ ଏକାବଳୀ, ସାହିତ୍ୟଦର୍ପଣ ଓ କୁବଳୟାନନ୍ଦର ଲେଖକମାନେ ରୁଯ୍ୟକଙ୍କଠାରୁ ଉତ୍ସାହ ଓ ପ୍ରେରଣା ପାଇଥିଲେ ।

**ସମୟ—**

ଖ୍ରୀ: ୧୧୦୦ ଅବ୍ଦ କେତେକ ବର୍ଷ ପୂର୍ବେ ବିକ୍ରମାଙ୍କ ଚରିତ, ରଚିତ ହୋଇଥିଲା । ରୁଯ୍ୟକ ଉକ୍ତଗ୍ରନ୍ଥର କତିପୟ ଅଂଶ ଉଦ୍ଧାର କରିଥିବାରୁ ୧୧୦୦ରୁ ପୂର୍ବବର୍ତ୍ତୀ ନୁହନ୍ତି । ପୁଣି କାଶ୍ମୀର ରାଜା ଜୟସିଂହଙ୍କର (ଖ୍ରୀ: ୧୧୨୮—୧୧୪୯) ସାନ୍ଧିବିଗ୍ରହିକ 'ମଙ୍ଖ'ଙ୍କର ଗୁରୁଥିଲେ ରୁଯ୍ୟକ । ତେଣୁ ତାଙ୍କ କବିତ୍ୱ ସ୍ଫୂର୍ତ୍ତିର କାଳ ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ସ୍ଥିର କରିବା ଅଯୌକ୍ତିକ ନୁହେଁ ।

## ଟୀକା ଗ୍ରନ୍ଥ—

ଅଳଙ୍କାର ସର୍ବସ୍ୱର ପ୍ରଧାନ ଟୀକା ହେଉଛନ୍ତି ଜୟରଥଙ୍କ ବିମର୍ଶିନୀ। ଟୀକାରୁ ଜୟରଥଙ୍କର ବିପୁଳ ପାଣ୍ଡିତ୍ୟର ପରିଚୟ ମିଳେ। ସେ ଅଳଂକାର ବାର୍ତ୍ତିକ, ଅଳଂକାରାନୁସାରିଣୀ, ଭାବପ୍ରକାଶ, କାବ୍ୟପ୍ରକାଶ ସଙ୍କେତ, ପୃଥ୍ୱୀରାଜ ବିଜୟ, ବକ୍ରୋକ୍ତିଜୀବିତ, ଅଳଂକାରସାର, ଅନଙ୍ଗଲେଖା, ରାଜତରଙ୍ଗିଣୀ, ନଦଭଟ୍ଟ ବିବେକ ପ୍ରଭୃତି ବହୁ ଗ୍ରନ୍ଥରୁ ମତ ଓ ଶ୍ଳୋକ ଉଦ୍ଧାର କରିଛନ୍ତି। ସେ ନିଜେ ତନ୍ତ୍ରାଲୋକ ବିବେକ ନାମକ ଏକ ଗ୍ରନ୍ଥ ଲେଖିଥିଲେ। ଅଳଂକାର ସର୍ବସ୍ୱର ଅନ୍ୟ ଦୁଇଟି ଟୀକା ମଧ୍ୟରୁ ପ୍ରଥମଟି ସମୁଦ୍ରବନ୍ଧ, ଓ ଦ୍ୱିତୀୟଟି ଚକ୍ରବର୍ତ୍ତୀଙ୍କ ପ୍ରଣୀତ ସଞ୍ଜୀବନୀ।

## ବାଗଭଟାଳଂକାର

ବାଗ୍‌ଭଟ୍ଟଙ୍କ ନାମାନୁସାରେ ତାଙ୍କ ଗ୍ରନ୍ଥଟିର ନାମକରଣ ହୋଇଛି। ଏହା ପାଞ୍ଚଗୋଟି ପରିଚ୍ଛେଦରେ ବିଭକ୍ତ। ତଳେ ଗ୍ରନ୍ଥଗତ ବିଷୟ ସୂଚୀ ଦଆଗଲା—

୧ମ ପରିଚ୍ଛେଦ—କବିର ଲକ୍ଷଣ, କାବ୍ୟ ହେତୁ ଇତ୍ୟାଦି।

୨ୟ ପରିଚ୍ଛେଦ—ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ଭେଦରେ କବି ଭାଷା ବିଭାଗ—ଭୂତଭାଷା—କାବ୍ୟ ଭେଦ—ଛନ୍ଦୋ ନିବଦ୍ଧ ଓ ଅଚ୍ଛନ୍ଦୋନିବଦ୍ଧ—ପଦ ଓ ବାକ୍ୟଦୋଷ ବିଚାର।

୩ୟ ପରିଚ୍ଛେଦ—ଦଶବିଧ କାବ୍ୟଗୁଣ ବିଚାର।

୪ର୍ଥ „ —ଶବ୍ଦାଳଂକାର ବିଚାର।

୫ମ „ —ରସ, ନାୟକ ନାୟିକା ଭେଦ।

ବାଗ୍‌ଭଟ୍ଟ ଜୈନ ଧର୍ମାବଲମ୍ବୀ ଥିବା ଜଣାଯାଏ । ବାଗ୍‌ଭଟ୍ଟା-ଲଂକାରରେ ପ୍ରଦତ୍ତ ସମସ୍ତ ଉଦାହରଣ ବାଗ୍‌ଭଟ୍ଟଙ୍କର । ଜଣେ ପଣ୍ଡିତଙ୍କ ମତରେ ବାଗ୍‌ଭଟ୍ଟ ନାମକ ଅନ୍ୟ ଜଣେ କବିଙ୍କର 'ନେମି-ନିର୍ମାଣ ମହାକାବ୍ୟ'ରୁ ଏଥିରେ କେତେକ ଶ୍ଳୋକ ଉଦ୍ଧାର କରା-ଯାଇଛି । ଉଦାହରଣ ସ୍ୱରୂପ ଚତୁର୍ଥ ପରିଚ୍ଛେଦରେ ବନ୍ଦ୍ୟୁତକର ଆଲୋଚନା ପରେ "ଏକ-ବ୍ୟଞ୍ଜନ"ର ଦୃଷ୍ଟାନ୍ତରୂପେ ଉକ୍ତ ଶ୍ଳୋକଟି ଅଛି—

''କକାକୁ କଙ୍କକେକାଙ୍କ କେକ କୋକୈକକୁଃ କକଃ
ଅକୁଂ କୌକଃ କାକକାକ୍କ କୁକାକୁକୁ କକାଙ୍କକୁଃ ।

ଏ ଶ୍ଳୋକଟିର ଟୀକା କରିବାକୁ ଯାଇ ସିଂହଦେବ ଗଣି ଲେଖିଛନ୍ତି ଏହା ନେମିନିର୍ମାଣ ମହାକାବ୍ୟର ରାଜୀମତୀ ପରିତ୍ୟାଗା-ଧିକାରର ( ପ୍ରକରଣର ) ଶ୍ଳୋକ । ଅନ୍ୟ ପଣ୍ଡିତମାନେ କିନ୍ତୁ ପ୍ରଥମତଃ ନାମସାମ୍ୟ ଥିବାରୁ ଏବଂ ଦ୍ୱିତୀୟତଃ ସକଳ ଉଦାହରଣ ଗ୍ରନ୍ଥକର୍ତ୍ତାଙ୍କ ନିଜର ହୋଇଥିବାରୁ ନେମିନିର୍ମାଣ ମହାକାବ୍ୟର ରଚୟିତା ବାଗ୍‌ଭଟ୍ଟଙ୍କୁ ବାଗ୍‌ଭଟ୍ଟାଲଂକାର ପ୍ରଣେତାଙ୍କଠାରୁ ପୃଥକ୍-ରୂପେ ଗ୍ରହଣ କରିବାକୁ ଅନିଚ୍ଛୁକ

## ଟୀକା ଗ୍ରନ୍ଥ—

ବାଗ୍‌ଭଟ୍ଟାଲଂକାର ଉପରେ ଅନେକ ଟୀକା ଦେଖାଯାଏ । ଅନ୍ୟମାନଙ୍କ ମଧ୍ୟରେ ଆଦିନାଥ, ଜନବର୍ଦ୍ଧନ, କ୍ଷେମହଂସଗଣି, ଗଣେଶ, ସମୟସୁନ୍ଦର, ବାଚନାଚାର୍ଯ୍ୟ, ପ୍ରମୋଦଗଣି, ସିଂହ ଓ ଦେବଗଣି, ଓ ରାଜହଂସୋପାଧ୍ୟାୟଙ୍କ ନାମ ଉଲ୍ଲେଖ୍ୟ ।

ସମୟ:—

ପ୍ରଭାଚନ୍ଦ୍ରଙ୍କର ପ୍ରଭାବକ ଚରିତରୁ ଜଣାଯାଏ, ରାଜଭଟ୍ଟ ଖ୍ରୀ: ୧୧୨୩-୧୧୫୭ ମଧ୍ୟରେ ଜୀବିତ ଥିଲେ । ସେ ଜୟସିଂହଙ୍କର (୧୦୯୩-୧୧୪୩) ବର୍ଣ୍ଣନା କରିଥିବାରୁ ତାଙ୍କର ସମସାମୟିକ ବୋଲି ଅନେକେ ସ୍ଥିର କରନ୍ତି ।

## କାବ୍ୟାନୁଶାସନ

ହେମଚନ୍ଦ୍ର କାବ୍ୟାନୁଶାସନ ଲେଖି ନିଜେ ତାର ଏକ ଟୀକା ପ୍ରଣୟନ କଲେ । ଗ୍ରନ୍ଥଟି ଆଠଗୋଟି ଅଧ୍ୟାୟରେ ବିଭକ୍ତ । ତଳେ ଗ୍ରନ୍ଥର ସାର ଅଧ୍ୟାୟ ଅନୁକ୍ରମେ ଦଆଗଲା:—

ପ୍ରଥମ ଅଧ୍ୟାୟ—କାବ୍ୟର ଉଦ୍ଦେଶ—କାବ୍ୟହେତୁ—(ଏଥିରେ ସେ କବିପ୍ରତିଭାକୁ ସର୍ବଶ୍ରେଷ୍ଠ ସ୍ଥାନ ଦେଇଛନ୍ତି) । କାବ୍ୟଲକ୍ଷଣ ।

ଦ୍ୱିତୀୟ —ରସ-ସ୍ଥାୟୀ, ବ୍ୟଭିଚାରୀ ଓ ସାତ୍ତ୍ୱିକ ଭାବ ।

ତୃତୀୟ —ପଦଦୋଷ, ଅର୍ଥ ଦୋଷ ଓ ରସଦୋଷ ।

ଚତୁର୍ଥ —ଗୁଣ ବିଚାର—ମାଧୁର୍ଯ୍ୟ, ଓଜଃ, ପ୍ରସାଦ ।

ପଞ୍ଚମ —ଶବ୍ଦାଳଂକାର, ଅନୁପ୍ରାସ, ଯମକ ଇତ୍ୟାଦି ଛଅପ୍ରକାର

ଷଷ୍ଠ —ଅଣଚାଳିଶ ଗୋଟି ଅର୍ଥାଳଂକାର ।

ସପ୍ତମ —ନାୟକ ନାୟିକାଙ୍କ ଭେଦ ଓ ସ୍ୱରୂପ ।

ଅଷ୍ଟମ —କାବ୍ୟଭେଦ—ପ୍ରେକ୍ଷ୍ୟ ଓ ଶ୍ରବ୍ୟ—ସେମାନଙ୍କ ଉପଭେଦ ।

ହେମଚନ୍ଦ୍ର ଜଣେ ଶ୍ରେଷ୍ଠ ଜୈନ ପଣ୍ଡିତ ଓ ଲେଖକ ଶବ୍ଦାନୁଶାସନ ନାମକ ଖଣ୍ଡିଏ ବ୍ୟାକରଣ ଗ୍ରନ୍ଥ ମଧ୍ୟ ସେ ଲେଖି

ଥିଲେ । ଅନୁସନ୍ଧିତ୍ସୁମାନେ ତାଙ୍କ ରଚିତ ଅନ୍ୟ କେତେ ଗ୍ରନ୍ଥ ଥିବା ଜାଣି ପାରିଛନ୍ତି । ସେ ଜଣେ ବଡ଼ ସମାଲୋଚକ ଥିଲେ । ବହୁ ସ୍ଥଳରେ ସେ ଅନ୍ୟମାନଙ୍କ ମତ ସ୍ୱୀକାର ନ କରି ନିଜ ଉଦ୍ଭାବିତ ଦିଗ୍‌ଦନ୍ତରେ ଅବତୀର୍ଣ୍ଣ ହୋଇଛନ୍ତି । ଅନ୍ୟମାନଙ୍କର ସ୍ୱଭାବୋକ୍ତିକୁ ସେ 'ଜାତି' ଏବଂ ଅପ୍ରସ୍ତୁତ ପ୍ରଶଂସାକୁ 'ଅନ୍ୟୋକ୍ତି' (ଅଳଂକାର) ନାମ ଦେଇଛନ୍ତି—ଏହା ତାଙ୍କ ମୌଳିକ ଚିନ୍ତାର ଏକ ଚରମ ନିଦର୍ଶନ ।

ସେ ଅବନ୍ତୀସୁନ୍ଦରୀ, ଉଷାହରଣ, ପଞ୍ଚଶିଖ ଶୂଦ୍ରକ କଥା, ଭାମହ ବିବରଣ, ରାବଣବିଜୟ, ହରବିଜୟ ଓ ହରିପ୍ରବୋଧ ପ୍ରଭୃତି ବହୁଗ୍ରନ୍ଥରୁ ଶ୍ଳୋକ ଉଦ୍ଧାର କରିଛନ୍ତି । ସେ ଖ୍ରୀ: ୧୦୮୮-ତର ଜନ୍ମ ହୋଇ ୧୧୭୨ରେ ପ୍ରାଣତ୍ୟାଗ କରିଥିବା ସ୍ଥିର ହୋଇଛି ।

## ଜୟଦେବ

ଜୟଦେବ ପୀୟୂଷବର୍ଷଙ୍କ 'ଚନ୍ଦ୍ରାଲୋକ' ଦଶଗୋଟି ମୟୂଖରେ ବିଭକ୍ତ । ଏହାର ଭାଷା ସରଳ ଓ ସହଜବୋଧ୍ୟ । ତଳେ ଏଥିରେ ଆଲୋଚିତ ବିଷୟମାନଙ୍କର ସଂକ୍ଷିପ୍ତ ସାର ଦିଆଗଲା:—

ପ୍ରଥମ ମୟୂଖ-କାବ୍ୟର ଲକ୍ଷଣ ଓ ହେତୁ; ଶବ୍ଦର ରୂଢ଼ି; ଯୌଗିକ ଓ ଯୋଗାରୂଢ଼ ଭେଦ ।

୨ୟ ମୟୂଖ—ଶବ୍ଦ, ଅର୍ଥ ଓ ବାକ୍ୟ ଦୋଷର ବର୍ଣ୍ଣନ ।

୩ୟ ମୟୂଖ—କବିମାନଙ୍କର ସୌନ୍ଦର୍ଯ୍ୟ ସମ୍ପାଦନ ନିମନ୍ତେ ଅବଲମ୍ବନୀୟ କେତେକ ପନ୍ଥା ନିର୍ଦ୍ଦେଶ ।

୪ର୍ଥ ମୟୂଖ—ଗୁଣ ଓ ତାହାର ଦଶଭେଦ ।
୫ମ ମୟୂଖ—ଶବ୍ଦ ଓ ଏକଶତ ଅର୍ଥାଲଙ୍କାର ।
ଷଷ୍ଠ ମୟୂଖ—ରସ, ଭାବ, ଭାବ ଓ ବୃତ୍ତି ବର୍ଣ୍ଣନ ।

ସପ୍ତମ ମୟୂଖ—ବ୍ୟଞ୍ଜନା ଓ ତାହାର ଭେଦ, ଓ ଧ୍ୱନ୍ୟ ବର୍ଣ୍ଣନ ।

ଅଷ୍ଟମ ମୟୂଖ—ଗୁଣୀଭୂତ ବ୍ୟଙ୍ଗ୍ୟର ଭେଦ ।
ନବମ ଓ ଦଶମ ମୟୂଖ—ଲକ୍ଷଣା ଓ ଅଭିଧା ବର୍ଣ୍ଣନ ।

ଜୟଦେବ ସମସ୍ୟା ଏ ପର୍ଯ୍ୟନ୍ତ ଅସମାଧେୟ ରହିଛି । ଜୟଦେବଙ୍କ ନାମରେ ଗ୍ରୁବଣ୍ଟି ଗ୍ରନ୍ଥ ଖ୍ୟାତିଲାଭ କରିଛି:-ଗୀତଗୋବିନ୍ଦ, ଅଲଂକାର ଶତକ, ଚନ୍ଦ୍ରାଲୋକ ଓ ପ୍ରସନ୍ନ ରାଘବ । ଏମାନଙ୍କ ପ୍ରଥମଟି ଏକ ଜଗତ୍ ପ୍ରସିଦ୍ଧ କାବ୍ୟ । ପରବର୍ତ୍ତୀ ଦୁଇଟି ଅଲଂକାର ଗ୍ରନ୍ଥ ଓ ଶେଷଟି ଗୋଟିଏ ନାଟକ । ପ୍ରଥମ ଦୁଇଟିର ଲେଖକ ସେହି ଖ୍ୟାତ ଉତ୍କଳର କେନ୍ଦୁବିଲ୍ୱ ନିବାସୀ ଭୋଜଦେବ ଓ ରାମ ଦେବୀଙ୍କ ପୁଅ ଜୟଦେବ । ଦ୍ୱିତୀୟ ଦୁଇଟିର କର୍ତ୍ତା ହେତଚନ୍ଦ୍ର ମହାଦେବ ଓ ସୁମିତ୍ରାଙ୍କ ପୁଅ । ପ୍ରଥମ ଜୟଦେବଙ୍କ ଜନ୍ମସ୍ଥାନ ଉତ୍କଳ ବୋଲି ସର୍ବସାଧାରଣରେ ସ୍ୱୀକୃତ ହୋଇଛି । ଦ୍ୱିତୀୟ ଜୟଦେବଙ୍କ ଜନ୍ମସ୍ଥାନ ବା ତାଙ୍କର ବ୍ୟକ୍ତିଗତ ଇତିହାସ କିଛି ଜଣାଯାଇ ନାହିଁ । ପୁଣି ଏମାନଙ୍କର ସମୟ ନେଇ ବହୁ ବାଦ ବିବାଦ ଦେଖାଯାଏ । ଏଥିରୁ କି କେତେକ ପଣ୍ଡିତ ଜୟଦେବଙ୍କୁ ଏକାଦଶ ଶତାବ୍ଦୀର ମନେ କଲବେଲେ ଅନ୍ୟମାନେ ପଞ୍ଚଦଶ ଶତାବ୍ଦୀର ବୋଲି ଅନୁମାନ କରନ୍ତି । ଦ୍ୱିତୀୟ ଜୟଦେବଙ୍କ ସମୟ ନିରୂପଣରେ

ସେହିପରି ଅନଭିଜ୍ଞତା ଦେଖାଯାଏ । ସାହିତ୍ୟକ ପ୍ରାସଙ୍ଗିକତା ଦୃଷ୍ଟିରୁ ଏଠାରେ ଅପର ଅଲୋଚ୍ୟ ବିଷୟ ହେଉଛି ଜୟଦେବ (ଗୀତଗୋବିନ୍ଦକାର) ଚନ୍ଦ୍ରାଲୋକର ଲେଖକ ହୋଇ ପାରନ୍ତି କି ନାହିଁ ।

ଚନ୍ଦ୍ରାଲୋକ ଲେଖକ ଗୀତଗୋବିନ୍ଦକାରଙ୍କଠାରୁ ଭିନ୍ନ, ଏକଥା ତଳଲିଖିତ ପ୍ରମାଣ ଗୁଡ଼ିକରୁ ଜଣାଯାଏ :—

(କ) ଏ ଦୁଇଜଣ ନିଜ ପିତାମାତାଙ୍କ ନାମ ଭିନ୍ନ ଭିନ୍ନ ପ୍ରକାରେ ଲେଖିଛନ୍ତି ।

(ଖ) ମମ୍ମଟ [ଦ୍ୱାଦଶ ଶତାବ୍ଦୀର] ନିଜ ଗ୍ରନ୍ଥରେ ମୋଟ ୬୦ ଅଳଂକାର ଆଲୋଚନା କରିଥିବା ବେଳେ ଚନ୍ଦ୍ରାଲୋକ ଲେଖକ ଯେତେବେଳେ ଏକଶତ ଅଳଂକାର ବର୍ଣ୍ଣନ କରିଛନ୍ତି ତେଣୁ ନିଶ୍ଚୟ ପରବର୍ତ୍ତୀକାଳର ହେବା ସମ୍ଭବ ।

(ଗ) କେଶବ ମିଶ୍ର ସ୍ୱୀୟ 'ଅଳଂକାରଶେଖର'ରେ ଲେଖିଛନ୍ତି, ଜୟଦେବ ପଣ୍ଡିତ କହ୍ଲଳ ରାଜ ସଭାରେ ନିଜର ତର୍କ ଯୁକ୍ତିବଳରେ ସମସ୍ତଙ୍କୁ ପରାଜିତ କରିଥିଲେ । ଏ ଜୟଦେବ କିଏ ? ଜାଣିବା ଅସମ୍ଭବ, ତେବେ ଗୀତଗୋବିନ୍ଦ ଲେଖକ ଜୟଦେବ ଜଣେ ତାର୍କିକ ଥିବା ଏପର୍ଯ୍ୟନ୍ତ ଜଣାଯାଇ ନାହିଁ । ମାନ୍ୟାଲୋକ ନାମକ ଯେଉଁ ତର୍କ ଗ୍ରନ୍ଥ ଦେଖାଯାଏ, ତାହା ଚନ୍ଦ୍ରାଲୋକ ଲେଖକ ଜୟଦେବଙ୍କ ପ୍ରଣୀତ ବୋଲି ଅନେକ ପଣ୍ଡିତଙ୍କ ମତ । ଏହା ସତ ହେଉ ବା ନ ହେଉ, ପ୍ରସନ୍ନ ରାଘବ ଓ ଚନ୍ଦ୍ରାଲୋକର ଲେଖକ ଜଣେ ବୋଲି ଯେବେ ଧରାଯାଏ (ପ୍ରଥମ ଯୁକ୍ତି ଅନୁସାରେ) ତେବେ, ସେ ଯେ ଜଣେ ଅସାଧାରଣ ତର୍କ ପଣ୍ଡିତ ଏଥିରେ ସନ୍ଦେହ ନାହିଁ ।

ଏହା ପ୍ରସନ୍ନ ରାଘବର ପ୍ରଥମ ଅଙ୍କ ଦେଖିଲେ ଜଣାପିବ । ଲେଖକ ନିଜେ ଲେଖିଛନ୍ତି, ଯାହାଙ୍କ ପକ୍ଷେ କର୍କଶ-ତର୍କଶାସ୍ତ୍ର ମଧ୍ୟ କୋମଳକାବ୍ୟ କୌଶଳ କଳା ଲୀଳାବତୀ ଭାରତୀର ସ୍ରଷ୍ଟା ହୋଇ ପାରନ୍ତି ।

(ଘ) ଚନ୍ଦ୍ରାଲୋକ ଲେଖକ ଜୟଦେବ ପୀୟୂଷବର୍ଷ ନାମରେ ପରିଚିତ ଥିଲେ । ସେ ତହିଁରେ ଲେଖିଛନ୍ତି:—"ଚନ୍ଦ୍ରାଲୋକମମୁଂ ସ୍ୱୟଂ ବିତନୁତେ ପୀୟୂଷବର୍ଷଃ କୃତୀ ।" କିନ୍ତୁ ଗୀତଗୋବିନ୍ଦ କବି ଜୟଦେବ ପୀୟୂଷବର୍ଷ ଉପାଧିରେ ବା ନାମରେ କୌଣସିଠାରେ ପରିଚିତ ହୋଇ ନାହାନ୍ତି । ଗୀତଗୋବିନ୍ଦରେ ସେ ନିଜକୁ ଜୟଦେବ କବି ବୋଲି କହିଛନ୍ତି । ତେଣୁ ସେ ଦୁହେଁ କଦାପି ଅଭିନ୍ନ ହୋଇ ନ ପାରନ୍ତି ।

(ଙ) ଚନ୍ଦ୍ରାଲୋକରେ ଲେଖକ ଅଳଂକାର ଶାସ୍ତ୍ରର ଅନେକ ବିଷୟ ଆଲୋଚନା କରିଛନ୍ତି । ଉକ୍ତ ଗ୍ରନ୍ଥର ଦଶଗୋଟି ମୟୂଖ ମଧ୍ୟରୁ କେବଳ ପଞ୍ଚମ ମୟୂଖରେ ସେ ଅଳଙ୍କାର ବିଷୟ ଆଲୋଚନା କରିଛନ୍ତି । ଗୀତ ଗୋବିନ୍ଦ ଲେଖକ ଜୟଦେବଙ୍କର ଅଳଙ୍କାର ଶତକ ନାମରେ ଯେଉଁ ଅଳଙ୍କାର ଗ୍ରନ୍ଥଟି ଦେଖାଯାଏ, ତହିଁରେ ଏକଶତ ଅଳଙ୍କାର ଅର୍ନ୍ତଭୁକ୍ତ ହୋଇଥିବା କଥା ନାମଟିରୁ ମଧ୍ୟ ସ୍ପଷ୍ଟ ପ୍ରକାଶ ପାଏ । ଜଣେ ଲେଖକ ଏକାପରି ଗୋଟିଏ ବିଷୟ ଦୁଇଥର ଲେଖନ୍ତେ କାହିଁକି ?

ଏ ସବୁ ଯୁକ୍ତିରୁ ମନେ ହୁଏ ବାସ୍ତବରେ ଜୟଦେବ ଦୁଇଜଣ; କିନ୍ତୁ ପିତାମାତାଙ୍କ ନାମ ଛାଡ଼ି ଦେଲେ ଅନ୍ୟ ଯୁକ୍ତି ଗୁଡ଼ିକ ଅକାଟ୍ୟ ପରି ଜଣାଯାଏ ନାହିଁ । ଉକ୍ତିଖିତ ଦ୍ୱିତୀୟ ଯୁକ୍ତିଠାରୁ ଗୋଟି ଗୋଟି ଆଲୋଚନା କରାଯାଉ ।

(ଖ) ଏ ଯୁକ୍ତି ନିତାନ୍ତ ଅମୂଳକ । ଅଳଙ୍କାର ସଂଖ୍ୟା ଯେବେ ମତଗ୍ରୁ ନିରୂପଣର ପ୍ରଧାନ ଅସ୍ତ୍ର ମନେ କରାଯାଏ, ତେବେ ଲେଖକ- ମାନଙ୍କ ବାସ୍ତବ ଜୀବନ କାଳ ଅଙ୍କକୁ ପରିବର୍ତ୍ତିତ କରିବାକୁ ହେବ— ଗୀତ ଗୋବିନ୍ଦ କବି ଜୟଦେବ ଏକାଦଶ ଶତାବ୍ଦୀ ଶେଷଭାଗ ବା ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧର ଲେଖକ ବୋଲି ବର୍ତ୍ତମାନ ବହୁ ଐତିହାସିକ ସ୍ଥିର କଲେଣି । ଅଳଂକାର ଶତକରେ ଏକଶତ ଅଳଙ୍କାର ଆଲୋଚିତ ହୋଇଥିବାରୁ ତାଙ୍କ ପରବର୍ତ୍ତୀ ଯେତେ ଲେଖକ ଅଳଙ୍କାର ଆଲୋଚନା କରିଛନ୍ତି, ସେମାନଙ୍କୁ ଏ ଜୟଦେବଙ୍କ ପୂର୍ବବର୍ତ୍ତୀ ବୋଲି ଧରି ନେବାକୁ ହେବ । ଦୃଷ୍ଟାନ୍ତ ସ୍ୱରୂପ ଅଳ୍ପ କେତେ ବର୍ଷତଳେ ଜୀବିତ ଥିବା ଜଗନ୍ନାଥ ଅଳଂକାରକ'ଭଗୀରଥି ରଥ, ୬୦ ଅଳଂକାର ଆଲୋଚନା କରି ଥିବାରୁ ( ଅଳଂକାର ମୀମାଂସାରେ ) ତାଙ୍କୁ ଜୟଦେବଙ୍କ ପୂର୍ବବର୍ତ୍ତୀ ବୋଲି ଧରିବାକୁ ହେବ ।

(ଗ) ଚନ୍ଦ୍ରାଲୋକ ବା ପ୍ରସନ୍ନରାଘବର ଲେଖକ ଜୟଦେବ ଜଗନ୍ନାଥରେ ପ୍ରତିଷ୍ଠା ଲାଭ କରି ନାହାନ୍ତି । ଗୀତ ଗୋବିନ୍ଦ କବି ଯେ ଜଗନ୍ନାଥ ଗୃହ ସଭାରେ ପ୍ରତିଷ୍ଠା ଲାଭ କରିଥିଲେ, ପୁରୁଷୋତ୍ତମ କ୍ଷେତ୍ର ଓ ଜଗନ୍ନାଥଙ୍କ ସହିତ ତାଙ୍କର ସମ୍ପର୍କ ଯେ ଅତ୍ୟନ୍ତ ନିକଟ ଓ ଘନିଷ୍ଠ ଏଥିରେ ସନ୍ଦେହର ଅବକାଶ ନାହିଁ । କିନ୍ତୁ ତାର୍କିକ ଜୟ- ଦେବଙ୍କ ସମ୍ବନ୍ଧରେ ଏପରି କିଛି କଥା ଶୁଣାଯାଏ ନାହିଁ । ପ୍ରସନ୍ନ ରାଘବ ଅନୁସାରେ ଯେବେ ତାର୍କିକ ମଧ୍ୟ ସୁକବି ହୋଇ ପାରେ ତେବେ ଗୀତ ଗୋବିନ୍ଦ କବି, କବି ହିସାବରେ ଶ୍ରେଷ୍ଠ ଖ୍ୟାତି ଲାଭ କରିଥିଲେ ମଧ୍ୟ ସେ ଯେ ଦାର୍ଶନିକ ବା ତାର୍କିକ ପଣ୍ଡିତ ନ ଥିଲେ ଏ କଥା ପ୍ରମାଣ କରି ହେବ ନାହିଁ । ବରଂ ଦ୍ୱାଦଶ

ଶତାବ୍ଦୀର କେଶବ ମିଶ୍ର ଯେଉଁ ତର୍କ ପଣ୍ଡିତ ଜୟଦେବଙ୍କ କଥା ଉଲ୍ଲେଖ କରଇଛନ୍ତି, ସେ ତାଙ୍କର ସମସାମୟିକ କିମ୍ବା ଅଳ୍ପ ପୂର୍ବବର୍ତ୍ତୀ କବି ଜୟଦେବ ହୋଇ ପାରନ୍ତି । ଶ୍ରୀହର୍ଷ ଏକାଧାରରେ ନୈଷଧ ଓ ଖଣ୍ଡନ ଖଣ୍ଡଖାଦ୍ୟର ( ଯାହା ତୁଲ୍ୟ କଠିନ ଦର୍ଶନ ଗ୍ରନ୍ଥ ବୋଧ ହୁଏ ଜଗତରେ ବିରଳ ) ପ୍ରଣେତା ।

(ଘ) ଜୟଦେବ ପୀୟୂଷ ବର୍ଷ ଯେବେ ପ୍ରସନ୍ନ ରାଘବର ମଧ୍ୟ ପ୍ରଣେତା, ତେବେ ଶେଷୋକ୍ତ ଗ୍ରନ୍ଥରେ ପୀୟୂଷ ବର୍ଷ କିପାଇଁ ଲିଖିତ ନ ହେଲା କାହିଁକି ? ଅଥଚ ମଧ୍ୟ ସ୍ୱଳ ଗମ ନାମ୍ନୀ ଟିକାରେ ଗାଗା ଭଟ୍ଟ ଲେଖିଛନ୍ତିଃ—

"ଜୟଦେବ ସୈ୍ୟବ ପୀୟୂଷବର୍ଷ ଇତି ନାମାନ୍ତରମ୍" । ଏହା ଯେବେ ଠିକ୍ ହୁଏ, ତେବେ ପୀୟୂଷବର୍ଷଙ୍କୁ ଗୀତ ଗୋବିନ୍ଦର ଲେଖକ ବୋଲି ଧରିଯାଇ ପାରେ । ଗୀତରୂପକ ଅମୃତ ବା ପୀୟୂ-ଷର ବୃଷ୍ଟି କେବଳ ତହିଁରେ ଦେଖିବାକୁ ମିଳେ । ତେଣୁ ପ୍ରଥମ କଥା ହେଉଛି କେବଳ ଚନ୍ଦ୍ରାଲୋକ ଛଡ଼ା ପ୍ରସନ୍ନ ରାଘବ ବା ଗୀତ ଗୋବିନ୍ଦରେ ପୀୟୂଷ ବର୍ଷ ନାମ ନାହିଁ । ଦ୍ୱିତୀୟ କଥା ଗୀତ-ଗୋବିନ୍ଦରେ ଲେଖକ ନିଜକୁ ଯେପରି "ଜୟଦେବ କବି" ବୋଲି ଲେଖିଛନ୍ତି, ଚନ୍ଦ୍ରାଲୋକରେ ମଧ୍ୟ ଠିକ୍ ସେହିପରି ଲେଖାଯାଇଛି । ଅତଏବ ଗୀତ ଗୋବିନ୍ଦ ଲେଖକ ସଙ୍ଗେ ଚନ୍ଦ୍ରାଲୋକ ଲେଖକଙ୍କ ସମ୍ପର୍କ ଯେତେ ଦୂରରେ, ପ୍ରସନ୍ନ ରାଘବ ଲେଖକଙ୍କ ତାହାଠାରୁ ନିଶ୍ଚୟ ବହୁ ଦୂରରେ । ଏଠାରେ ପୁଣି ଉଲ୍ଲେଖ୍ୟ; କବି ଜୟଦେବ ପୀୟୂଷ ଲହରୀ ନାମ୍ନୀ ଏକ ନାଟିକା ମଧ୍ୟ ଲେଖିଥିବା କଥା ଏବେ ଜଣା ଯାଇଛି ।

(ଙ) ଏ ଯୁକ୍ତି ବଳିଷ୍ଠ ନୁହେଁ । ସମାନ ସାମନ୍ତ ବିଷୟ ଥାଇ ଶଙ୍କରଗୁରୁଙ୍କ ବହୁ ଛୋଟ ବଡ଼ କବିତା ଦେଖାଯାଏ । ଏଥିରୁ ଜଣା

ଧ୍ୱନିଯିବ ଶବ୍ଦର ସେ ସବୁର ପ୍ରଣେତା ସୁଧାନ୍ତି ? ପ୍ରକୃତ କଥା ହେଉଛନ୍ତି ଜୟଦେବ ପ୍ରଥମେ ଅଳଙ୍କାର୍ଯ୍ୟ ଶବ୍ଦର ପ୍ରଣୟନ କଲେ । ପରେ ଯେତେବେଳେ 'ଅଳଙ୍କାର ଶାସ୍ତ୍ର' ଉପରେ ଏକ ଗ୍ରନ୍ଥ ଲେଖିଲେ, ସେତେବେଳେ ଉକ୍ତ ଶାସ୍ତ୍ରର ପ୍ରଧାନ ଅଙ୍ଗ 'ଅଳଙ୍କାର' ପ୍ରକରଣ ଛାଡ଼ ଦେଲେ ବା ଉହିଁରେ ସମାବେଶ ନ କଲେ ଗ୍ରନ୍ଥଟି ଅପୂର୍ଣ୍ଣ ରହିବ—ଏ ଆଶଙ୍କାରେ ବଡ଼ ସଂକ୍ଷିପ୍ତ ଭାବରେ ତାହା ଚନ୍ଦ୍ରାଲୋକର ଅଙ୍ଗୀଭୂତ କଲେ ।

ଏ ପ୍ରକାର ସମାଲୋଚନାର ସାର ସାର ବିଷୟ ପାଠକମାନଙ୍କ ଉପରେ ସମର୍ପଣ କରି ସେମାନଙ୍କ ଦୃଷ୍ଟି ଅନ୍ୟ କେତେ ଗୋଟି, ଉକ୍ତ ସିଦ୍ଧାନ୍ତର ଅନୁକୂଳ ଯୁକ୍ତି ପ୍ରତି ଆକର୍ଷଣ କରାଯାଇ ପାରେ ।

(କ) ଗୀତଗୋବିନ୍ଦ ଜୟଦେବଙ୍କ ଏକାଦଶ ଶେଷ ବା ଦ୍ୱାଦଶ ପ୍ରଥମାର୍ଦ୍ଧର ବୋଲି ସ୍ଥିର କରାଯାଇଛି । ଚନ୍ଦ୍ରାଲୋକ ଲେଖକଙ୍କ ସମୟ ଏପର୍ଯ୍ୟନ୍ତ ସ୍ଥିର ହୋଇନାହିଁ । ଯେଉଁମାନେ ମଧ୍ୟ ଏ ଦୁହିଁଙ୍କ ଅଭିନ୍ନତା ପ୍ରମାଣ କରନ୍ତି, ସେମାନେ ପୀୟୂଷବର୍ଷ ଜୟଦେବଙ୍କୁ ପ୍ରାୟ ସେହି ସମୟର ବୋଲି ନିଶ୍ଚୟ କରନ୍ତି ।

(ଖ) ଜୟଦେବ ପୂର୍ବରୁ କୃଷ୍ଣଭକ୍ତ । ପ୍ରସନ୍ନ ରାଘବର ଲେଖକ ରାମଭକ୍ତ ଥିବାର ଅନୁଚିତ ହୁଏ । ଅବଶ୍ୟ ଜଣେ ଏ ଉଭୟର ଭକ୍ତ ହୋଇପାରେ, କିନ୍ତୁ ଗୀତ ଗୋବିନ୍ଦରେ ଯେପରି କୃଷ୍ଣର ପ୍ରାଧାନ୍ୟ, ପ୍ରସନ୍ନ ରାଘବରେ ସେହିପରି ରାମଙ୍କ ପ୍ରାଧାନ୍ୟ ରହିଛି । କିନ୍ତୁ ଚନ୍ଦ୍ରାଲୋକରେ ଏକ ସଂକ୍ଷିପ୍ତ ଶ୍ଳୋକରେ ମଧ୍ୟ କୃଷ୍ଣ ଶବ୍ଦ ବ୍ୟବହାର କର କର ଉଦାହରଣ ଦେଇଛନ୍ତି ।

(ଗ) ପ୍ରସନ୍ନ ରାଘବ ନାଟକରୁ ଜଣାଯାଏ, ଲେଖକ ଜଣେ ନାଟ୍ୟଗୀତ ବା-ଶାସ୍ତ୍ରବେତ୍ତା । କିନ୍ତୁ ଆଶ୍ଚର୍ଯ୍ୟର କଥା, ଚନ୍ଦ୍ରାଲୋକରେ ନାଟକ ପ୍ରକରଣର ବିଷୟ ହୋଇନାହିଁ ।

ଏ ସବୁ ଦେଖିଲେ ମନେ ହୁଏ, ମାନ୍ୟଙ୍କ ଲେଖକ ପ୍ରସନ୍ନ ରାଘବର ଲେଖକଙ୍କଠାରୁ ଅଭିନ୍ନ ହୋଇ ପାରନ୍ତି । କିନ୍ତୁ ଚନ୍ଦ୍ରାଲୋକ ଓ ଗୀତଗୋବିନ୍ଦର ଲେଖକ ଜଣେ । ପ୍ରଥମେ ସେ ନିଜ ଭାଷାରେ 'କବି ଜୟଦେବ' ଥିଲେ ଏବଂ ତାଙ୍କ କବିତା ସର୍ବଶ୍ରେଷ୍ଠ ବୋଲି ଗୀତଗୋବିନ୍ଦରେ ସେ ସଗର୍ବରେ ଘୋଷଣା କରିଛନ୍ତି । ପିତାମାତାଙ୍କ ନାମମୂଳକ ସୂତ୍ରର ତେବେ ସମାଧାନ କିଣ, ଏ ପ୍ରଶ୍ନ ଉଠିପାରେ । ଏ ସଂପର୍କରେ ଅନ୍ୟସବୁ ସୂତ୍ରର ବଳିଷ୍ଠତା ମନେ କରିବଦେବା ସଙ୍ଗେ ସଙ୍ଗେ କୁହାଯାଇ ପାରେ, ଚନ୍ଦ୍ରାଲୋକର କୌଣସି ଟୀକାକାର ପ୍ରସନ୍ନ ରାଘବରେ ମହାଦେବ ଓ ସୁମିତ୍ରାଙ୍କ ନାମ ଦେଖି ଏବଂ ଯଥାସମ୍ଭବ ଚନ୍ଦ୍ରାଲୋକରେ କବି ପିତାମାତାଙ୍କ ନାମୋଲ୍ଲେଖ କରି ନ ଥିବାର ସୁଯୋଗ ନେଇ, ଜୟଦେବଙ୍କୁ ସେଇ ନାଟ୍ୟକାରଙ୍କଠାରୁ ଅଭିନ୍ନ ମନେକରି ଗୋଟିଏ ଶ୍ଳୋକ ରଚନା କରିଦେଲେ । (ଯେଉଁଥିରେ ସେ ମହାଦେବଙ୍କ ପୁଅ ବୋଲି କୁହାଗଲା) ଏବଂ ଚନ୍ଦ୍ରାଲୋକର ପ୍ରତିମୟୂଖ ଶେଷରେ ସେହି ଗୋଟିକ ଶ୍ଳୋକ ନିବନ୍ଧ କରିଦେଲେ । ଏସବୁ ଆଲୋଚନା ଶେଷରେ ଏତିକି ମାତ୍ର କହୁହେବ, ଜୟଦେବ ସମସ୍ୟାର ସମାଧାନ ହିଁ ହିଁଲ । ଭବିଷ୍ୟତରେ ଗବେଷଣା ହୁଏତ ଏହା ସରଳ କରି ପାରିବ ।

---

## ଅଷ୍ଟମ ପରିଚ୍ଛେଦ

### [ଚତୁର୍ଦ୍ଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ]

### ରସତରଙ୍ଗିଣୀ

ରସତରଙ୍ଗିଣୀ ଓ ରସମଞ୍ଜରୀ ଭାନୁଦତ୍ତଙ୍କର ଦୁଇଟି ଅଳଂକାର ଗ୍ରନ୍ଥ । ନାମଟିରୁ ଜଣାଯାଏ, ରସତରଙ୍ଗିଣୀରେ ରସର ଆଲୋଚନା କରାଯାଇଛି । ତଳେ ଗ୍ରନ୍ଥର ସୂଚୀ ଦିଆଗଲା:—

ପ୍ରଥମ ତରଙ୍ଗ—ଭାବ ଓ ତଦ୍‌ଗତ ଭେଦ ।
ଦ୍ୱିତୀୟ —ବିଭାବର ଲକ୍ଷଣ ଓ ଭେଦ ।
ତୃତୀୟ —ଅନୁଭାବ (କଟାକ୍ଷ ପ୍ରଭୃତି) ।
ଚତୁର୍ଥ —ସାତ୍ତ୍ୱିକ ଭାବ (ସ୍ତମ୍ଭ ପ୍ରଭୃତି) ।
ପଞ୍ଚମ —ବ୍ୟଭିଚାରୀ ଭାବ ଓ ସ୍ଥାୟୀ ଭାବ ।
ଷଷ୍ଠ —ରସ-ଶୃଙ୍ଗାର ରସର ପ୍ରାଧାନ୍ୟ ପ୍ରତିପାଦନ ।
ସପ୍ତମ ,, —ହାସ୍ୟ ପ୍ରଭୃତି ଅନ୍ୟ ରସମାନଙ୍କର ଆଲୋଚନା ।
ଅଷ୍ଟମ ,, —ସ୍ଥାୟୀ ଭାବତା ଓ ରସତା ଦୃଷ୍ଟି ।

ରସମଞ୍ଜରୀରେ ବିଶେଷଭାବେ କାବ୍ୟର ନାୟକ ନାୟିକାଙ୍କର ବିଭାଗ ଓ ସ୍ୱରୂପ ବର୍ଣ୍ଣିତ କରାଯାଇଛି । ଭାନୁଦତ୍ତ ଜଣେ ନିପୁଣ କବିଥିଲେ । ସେ ଆବଶ୍ୟକୀୟ ସମସ୍ତ ଉଦାହରଣ ଶ୍ଲୋକ ନିଜେ ରଚନା କରିଥିଲେ । ରସମଞ୍ଜରୀରେ ଏହା ସେ ନିଜେ ଲେଖି ଯାଇଛନ୍ତି:—

"ଏତଦ୍ୟେନ ସ୍ୱକୃତେନ ତେନ କବିନା ଶ୍ରୀଭାନୁନା ଯୋଜିତା"
ତାଙ୍କ ପିତା ମଧ୍ୟ ଜଣେ ପଣ୍ଡିତ ଓ କବିଥିଲେ । ସେ ଯେଉଁଠାରେ ପିତାଙ୍କ ଶ୍ଳୋକ ଉଦ୍ଧାର କରିଛନ୍ତି ସେଠାରେ ସେ କଥା ସ୍ପଷ୍ଟ ଉଲ୍ଲେଖ କରିଛନ୍ତି । ରସତରଙ୍ଗିଣୀ ଅତଶୀଘ୍ର ଲୋକ ଆଦୃତ ହୋଇଥିଲା ଏବଂ ବହୁ ପଣ୍ଡିତ ତାହାର ଟୀକା ଲେଖିବାକୁ ପ୍ରବୃତ୍ତ ହୋଇଥିଲେ । ଏଠାରେ କେତେକ ଟୀକାକାର ଓ ଟୀକାର ନାମ ଲେଖାଗଲା—ଅଯୋଧ୍ୟା ପ୍ରସାଦ, ଧନଜୟ, ଭଗବଦ୍ଭଟ୍ଟ, ଗଙ୍ଗାରାମ (ଖ୍ରୀ:ଅଷ୍ଟାଦଶ ଶତାବ୍ଦୀ) ବେଣୀଦତ୍ତ, ଗଣେଶ (ଏ ଦୁହେଁ ସପ୍ତଦଶ ଶତାବ୍ଦୀର), ମହାଦେବ ଓ ଜୀବରାମ ଶର୍ମ୍ମା । ରସ ମଞ୍ଜରୀ ଉପରେ ରଙ୍ଗ, ଅମୋଦ, ଶେଷଚିନ୍ତାମଣିଙ୍କ ପରିମଳ, ନାଗେଶ ଭଟ୍ଟଙ୍କ ପ୍ରକାଶ, ମହାଦେବଙ୍କ ଭାନୁଭାବ ପ୍ରକାଶିନୀ, ବ୍ରଜରାଜ ଦୀକ୍ଷିତଙ୍କ ରସିକରଞ୍ଜନ, ଗୋପାଳଭଟ୍ଟଙ୍କ ରସିକରଞ୍ଜନୀ, ବୋପଦେବଙ୍କ ରସମଞ୍ଜରୀ ବିକାଶ, ଅନନ୍ତ ପଣ୍ଡିତଙ୍କ କୌମୁଦୀ, ବିଶ୍ୱେଶ୍ୱରଙ୍କ ବ୍ୟଙ୍ଗ୍ୟାର୍ଥଦୀପିକା ପ୍ରଭୃତି ଟୀକା ଲେଖା ପାଇଥିଲା । ରାମନାଥଙ୍କ ଏକଟୀକା (ନାମ ଜଣା ନାହିଁ) ଓ ଗୁଢାର୍ଥଦୀପିକା (ଲେଖକଙ୍କ ନାମ ଜଣା ନାହିଁ) ନାମକ ଅନ୍ୟ ଏକ ଟୀକା ରସମଞ୍ଜରୀ ଉପରେ ଲେଖାଯାଇଥିବା ଜଣାଯାଇଛି ।

ଭାନୁଦତ୍ତଙ୍କ ପିତା ଗଣେଶ୍ୱର ଜଣେ ପଣ୍ଡିତ ଥିବା କଥା ରସମଞ୍ଜରୀରୁ ଜଣାଯାଏ ଏବଂ ବିଦର୍ଭ ଦେଶ ତାଙ୍କର ବାସ ଭୂମି ଥିଲା* । ଗଣେଶ୍ୱରଙ୍କର ଯେତେ ବିବାଦ ରତ୍ନାକରର ଲେଖକ

---

*ତାତୋଯସ୍ୟ ଗଣେଶ୍ୱରଃ କବିକୁଳାଳଂକାର ଚୂଡାମଣି
ଦେଶୋ ଯସ୍ୟ ବିଦେହଭୂଃ ସୁର ସରିତ୍କଲ୍ଲୋଳ କିର୍ମୀରିତା ।
(ରସମଞ୍ଜରୀ)

ଚାଣ୍ଡେଶ୍ୱରଙ୍କ (ଖ୍ରୀ: ୧୩୧୫) ସଙ୍ଗେ ନିକଟ ସମ୍ପର୍କ ଥାଏ, ଯାହା ସତ୍ୟ ବୋଲି ଅନେକ ପଣ୍ଡିତ ଅନୁମାନ କରନ୍ତି, ତେବେ ଏହାଙ୍କ ସମୟ ସେ ଦୃଷ୍ଟିରୁ ତ୍ରୟୋଦଶ ଶତାବ୍ଦୀର ଶେଷାର୍ଦ୍ଧ ବା ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ହେବା ଉଚିତ ବୋଲି ସେମାନଙ୍କ ମତ । ପଞ୍ଚଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ 'ଗୋପନ' ଏହାର ପ୍ରଥମ ଟୀକା ଲେଖିଥିଲେ ।

## ଏକାବଳୀ

ଏକାବଳୀ ଲେଖକ ବିଦ୍ୟାଧର ଜଣେ ଉତ୍କଳୀୟ ପଣ୍ଡିତ । ସେ ଉତ୍କଳର ଗଙ୍ଗବଂଶୀୟ ନରପତି ଦ୍ୱିତୀୟ ନରସିଂହ ଦେବଙ୍କର ପ୍ରେରଣା ଓ ପୃଷ୍ଠପୋଷକତାରେ ଉକ୍ତ ଗ୍ରନ୍ଥ ପ୍ରଣୟନ କରିଥିଲେ । ସେ କଥା ଜୀବନ୍ତ ଭାଷାରେ ଲିପିବଦ୍ଧ କରି ବିଦ୍ୟାନୁରାଗୀ ନରସିଂହଙ୍କ ଗୁଣଗାନ ଓ ତାଙ୍କ ପ୍ରତି ଗଭୀର କୃତଜ୍ଞତା ଜ୍ଞାପନ ସଙ୍ଗେ ସଙ୍ଗେ ଆଧୁନିକ ଅନୁସନ୍ଧିତ୍ସୁମାନଙ୍କର ବୃଥା ସନ୍ଦେହର ଅବକାଶ ଦେଇ ନାହାନ୍ତି । ସେ ଲେଖିଛନ୍ତି:—

'ଏଷବିଦ୍ୟାଧରସ୍ତେଷୁ କାନ୍ତାସମ୍ମିତ ଲକ୍ଷଣମ୍
କରୋମି ନରସିଂହସ୍ୟ ଚାଟୁଶ୍ଳୋକାନୁଦାହରନ୍ ।'

ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟ ଭାଗରେ ଲିଖିତ ଶିଙ୍ଗଭୂପାଳଙ୍କ 'ରସାର୍ଣ୍ଣବ ସୁଧାକର'ରେ ମଧ୍ୟ କୁହାଯାଇଛି—'ଉତ୍କଳାଧିପତେଃ ଶୃଙ୍ଗାରରସାଭିମାନିନୋ ନରସିଂହଦେବସ୍ୟ ଶତ୍ରୁମନୁ ବର୍ତ୍ତିମାନେନ ବିଦ୍ୟାଧରେଣ କବିନା······ଏବଂ ଉକ୍ତ ସମର୍ଥିତ ମେକାବଲ୍ୟା ମନେନ ।' ଏହାର ସାରକଥା ଶୃଙ୍ଗାର ରସପ୍ରିୟ ଉତ୍କଳାଧିପତି

ନରସିଂହଙ୍କ ଇଚ୍ଛାରେ ବିଦ୍ୟାଧର ଏକାବଳୀ ଲେଖିଥିଲେ । ଗ୍ରନ୍ଥଟି ଅଠଗୋଟି ଉନ୍ମେଷରେ ବିଭକ୍ତ ।
୧ମ ଉନ୍ମେଷ—କାବ୍ୟହେତୁ ଓ କାବ୍ୟର ଲକ୍ଷଣ ନିରୂପଣ ।
୨ୟ „—ଶବ୍ଦଶକ୍ତି—ଅଭିଧା, ଲକ୍ଷଣା—ବ୍ୟଞ୍ଜନା ।
୩ୟ „—ଧ୍ୱନି ଓ ତାହାର ଭେଦ ।
୪ର୍ଥ „—ଗୁଣୀଭୂତ ବ୍ୟଙ୍ଗ୍ୟ ।
୫ମ „—ଗୁଣ ଓ ରୀତି ।
୬ଷ୍ଠ „—ଦୋଷ ପ୍ରକରଣ ।
୭ମ ଓ ୮ମ „—ଶବ୍ଦାଳଂକାର ଓ ଅର୍ଥାଳଂକାର ।

## ଉଲ୍ଲିଖିତ ଗ୍ରନ୍ଥ ଓ ଟୀକା—

ପ୍ରଥମ ଉନ୍ମେଷରେ ସେ ଧ୍ୱନ୍ୟାଲୋକର ପନ୍ଥା ବିଶେଷ ପରିମାଣରେ ଅନୁସରଣ କରିଛନ୍ତି । ଅଳଂକାର ପ୍ରକରଣ ପାଠ କଲେ ଜଣାଯାଏ, ଅଳଂକାର ସର୍ବସ୍ୱର ଯଥେଷ୍ଟ ପ୍ରଭାବ ବିଦ୍ୟାଧରଙ୍କ ଉପରେ ପଡ଼ିଥିଲା । କାମଶାସ୍ତ୍ର ସମ୍ପର୍କୀୟ 'କେଳି ରହସ୍ୟ' ନାମକ ସେ ଅନ୍ୟ ଖଣ୍ଡିଏ ଗ୍ରନ୍ଥ ପ୍ରଣୟନ କରିଥିଲେ । ଏକାବଳୀରେ ଅଭିନବ ଗୁପ୍ତ, ଭୋଜ, ମହିମଭଟ୍ଟ, ନୈଷଧ, ମମ୍ମଟ, ବିଲ୍ହଣ, ବାମନ ପ୍ରଭୃତିଙ୍କ ମତ ବା 'ଶ୍ଲୋକ' ଉଦ୍ଧାର କରାଯାଇଛି । ଟୀକାକାର କୋଲାଚଲ ମଲ୍ଲିନାଥ ତରଳ ନାମକ ଏକ ଟୀକା ଏକାବଳୀ ଉପରେ ଲେଖିଥିଲେ । ଏତଦ୍ଭିନ୍ନ ମଧ୍ୟ ଏ ଗ୍ରନ୍ଥର ଅନ୍ୟ ଏକ ଟୀକା ଅଛି ।

## ସମୟ—

ତ୍ରୟୋଦଶ ଶତାବ୍ଦୀର ଅନ୍ତରୁ ଚତୁର୍ଦ୍ଦଶ ଶତାବ୍ଦ ଭିତରେ ଛଅଜଣ ନରସିଂହ ରାଜା ହୋଇଥିଲେ । ଏମାନଙ୍କ ମଧ୍ୟରେ ୨ୟ

ରାଜା ଭବ ନରସିଂହଙ୍କ ସମୟରେ ବିଦ୍ୟାଧର ଥିବା ଅଧିକ ସମ୍ଭାବନା । ତେଣୁ ଯଥାର୍ଥରେ ସେ ଚତୁର୍ଦ୍ଦଶ ଶତାବ୍ଦୀ ଆରମ୍ଭ ବା ତ୍ରୟୋଦଶ ଶେଷଭାଗରେ ଥିଲେ ।

## ପ୍ରତାପରୁଦ୍ର ଯଶୋଭୂଷଣ

ବିଦ୍ୟାନାଥଙ୍କ ଉକ୍ତ ଗ୍ରନ୍ଥ ପ୍ରତାପ ରୁଦ୍ରୀୟ ନାମରେ ପରିଚିତ । ବିଦ୍ୟାଧରଙ୍କର ବିଦ୍ୟାନାଥଙ୍କ ସଙ୍ଗେ ଯେ କେବଳ ନାମଗତ ବା ସମୟଗତ ସାଦୃଶ୍ୟ ଅଛି ତାହା ନୁହେ । ଉଭୟେ ଜଣେ ଜଣେ ନରପତିଙ୍କ ପ୍ରେରଣାରେ ନିଜ ନିଜର ଗ୍ରନ୍ଥ ପ୍ରଣୟନ କରିଥିଲେ ଏବଂ ସମଗ୍ର ଗ୍ରନ୍ଥରେ ଯେତେ ଶ୍ଳୋକ ଉଦାହରଣ ରୂପେ ଉଦ୍ଧୃତ ହୋଇଛି ସେସବୁ ଉଭୟେ ନିଜେ ନିଜେ ରଚନା କରିଥିଲେ । ବିଦ୍ୟାନାଥ କାକତୀୟ ବଂଶର ରାଜା ପ୍ରତାପରୁଦ୍ରଙ୍କର ସମସାମୟିକ । ଏହି ରାଜାଙ୍କର ରାଜଧାନୀ ଥିଲା ଏକଶିଳା ଏବଂ ତ୍ରୟୋଦଶ ଶତାବ୍ଦୀର ଶେଷଭାଗରେ ଏ ଶାସନ କରୁଥିଲେ । ଆଧୁନିକ ଓ୍ୱାରଙ୍ଗଲ ହେଉଛି ପ୍ରାଚୀନ ଏକଶିଳା । ବିଦ୍ୟାନାଥ ଯେ କେବଳ ଏହାଙ୍କ ପ୍ରୋତ୍ସାହରେ ଲେଖିଥିଲେ ତାହା ନୁହେ, ଗ୍ରନ୍ଥ ଲେଖି ପ୍ରତ୍ୟେକ ଉଦାହରଣ ଶ୍ଳୋକରେ ଏହାଙ୍କ ନାମକୁ ସନ୍ନିବେଶିତ କରିଅଛନ୍ତି । ଶ୍ଳୋକଗୁଡ଼ିକର ଏ ବିଶେଷତ୍ୱ କବିଙ୍କର କମ୍ ଦକ୍ଷତା ଓ ପ୍ରତିଭାର ସୂଚନା ଦିଏ ନାହିଁ । ଗ୍ରନ୍ଥଟି ନଅଗୋଟି ପ୍ରକରଣରେ ବିଭକ୍ତ । ତଳେ ବିଭିନ୍ନ ପ୍ରକରଣର ସାର ଦିଆଗଲା ।

୧ମ ପ୍ରକରଣ—ନାୟକ ପ୍ରକରଣ—କାବ୍ୟର ଉଦ୍ଦେଶ୍ୟ ଓ ନାୟକ ନାୟିକା ଭେଦ ।

୨ୟ " —କାବ୍ୟର ସ୍ୱରୂପ—ବୃତ୍ତି-ରୀତି-ଧ୍ୱନି ଓ କାବ୍ୟଭେଦ ।

୩ୟ ପ୍ରକରଣ—ନାଟକର ସ୍ୱରୂପ—ଦଶରୂପକ-ପଞ୍ଚ ସନ୍ଧି ଇତ୍ୟାଦି ।
୪ର୍ଥ „ —ରସର ସ୍ୱରୂପ—ସ୍ଥାୟୀ, ବ୍ୟଭିଚାରୀ ଓ ସାତ୍ତ୍ୱିକଭାବ ।
୫ମ „ —ପଦଦୋଷ, ବାକ୍ୟଦୋଷ ଓ ଅର୍ଥଦୋଷ ।
୬ଷ୍ଠ „ —ସ୍ୱତଃ ଉତ୍କର୍ଷ ହେତୁକ ଓ ଦୋଷ ପରିହାରକ ଗୁଣ ବର୍ଣ୍ଣନ ।
୭ମ „ —ଶବ୍ଦାଳଂକାର ପ୍ରକରଣ ।
୮ମ —ଅର୍ଥାଳଂକାର ପ୍ରକରଣ—୭୨ ଅର୍ଥାଳଂକାରର ବର୍ଣ୍ଣନ ।
୯ମ „ ମିଶ୍ରାଳଂକାର—ସଂସୃଷ୍ଟି ଓ ସଂକର ଅଳଂକାର ।

ପ୍ରତାପ ରୁଦ୍ରୀୟରେ ଅଳଂକାର ସର୍ବସ୍ୱ, ଉଦ୍‌ଭଟ, ଦଣ୍ଡୀ, କାବ୍ୟ ପ୍ରକାଶ, ଦଶରୂପକ, ବାଲ ରାମାୟଣ, ଭରତ, ଭୋଜ, ବାମନ, ରୁଦ୍ରଭଟ୍ଟ ପ୍ରଭୃତିଙ୍କର ଉଲ୍ଲେଖ ହୋଇଛି । ଏଥିରେ ଗୋଟିଏ ଅସାଧାରଣ ବିଶେଷତ୍ୱ ପରିଲକ୍ଷିତ ହୁଏ । ନାଟକୀୟ ବିଷୟ ବସ୍ତୁର ବର୍ଣ୍ଣନ କରିବାକୁ ଯାଇ ଅନ୍ୟ ସମସ୍ତ ଆଳଂକାରିକ କେବଳ ତତ୍ ସମ୍ପର୍କୀୟ ମତବାଦର ବ୍ୟାଖ୍ୟାନ କରିଯାଇଛନ୍ତି । କିନ୍ତୁ ବିଦ୍ୟାନାଥ ମତବାଦର ବର୍ଣ୍ଣନ ସଙ୍ଗେ ସଙ୍ଗେ ପାଞ୍ଚ ଗୋଟି ଅଙ୍କ ଥିବା ଏକ ଆଦର୍ଶ ନାଟକ ରଚନା କରି ନାଟକ ପ୍ରକରଣରେ ଉଦାହରଣରୂପେ ପ୍ରଦାନ କରିଅଛନ୍ତି ।

ବିଖ୍ୟାତ ଟୀକାକାର ମଲ୍ଲୀନାଥଙ୍କ ପୁତ୍ର କୁମାର ସ୍ୱାମୀ ଉକ୍ତ ଗ୍ରନ୍ଥ ଉପରେ ରତ୍ନାପଣ ନାମକ ଯେଉଁ ଟୀକା ଲେଖିଛନ୍ତି ତହିଁରେ ସେ ମାନସୋଲ୍ଲାସ, ସାହିତ୍ୟ ଚିନ୍ତାମଣି, କବିକଳ୍ପଦ୍ରୁମ, ଅଳଂକାର ଚୂଡ଼ାମଣି, ଶୃଙ୍ଗାର ପ୍ରକାଶ, ପଦମଞ୍ଜରୀ, ସାହିତ୍ୟ-ଦର୍ପଣ, ବିଦଗ୍ଧ ମୁଖମଣ୍ଡନ, ନାଟକପ୍ରକାଶ ପ୍ରଭୃତି ବହୁ ଗ୍ରନ୍ଥର ମତ ଉଦ୍ଧାର

କରିଛନ୍ତି । ବଡ଼ୁ ମୂଳରେ ସେ ବ୍ୟାକରଣ ଗ୍ରନ୍ଥରୁ ସୂତ୍ର ଉଦ୍ଧାର ପୂର୍ବକ ପଦସିଦ୍ଧ କର ସ୍ୱୀୟ ଗଭୀର ବ୍ୟାକରଣ ଜ୍ଞାନର ପରିଚୟ ଦେଇଛନ୍ତି ।

## କାବ୍ୟାନୁଶାସନ

କାବ୍ୟାନୁଶାସନ ଲେଖିବା ପରେ ବାଗ୍‌ଭଟ୍ଟ ନିଜେ ତା ଉପରେ ଅଳଂକାର-ତିଳକ ନାମକ ଏକ ଟୀକା ପ୍ରଣୟନ କରିଥିଲେ । ଗ୍ରନ୍ଥଟି ପାଞ୍ଚଟି ଅଧ୍ୟାୟରେ ବିଭକ୍ତ :—

୧ମ ଅଧ୍ୟାୟ—କାବ୍ୟର ପ୍ରୟୋଜନ ଓ କାବ୍ୟ ହେତୁ—କବି ସମୟ ପ୍ରସିଦ୍ଧି—କାବ୍ୟଭେଦ ଓ ରୂପକଭେଦ ।

୨ୟ ଅଧ୍ୟାୟ—ଷୋଡ଼ଶ ପଦଦୋଷ—ଚତୁର୍ଦ୍ଦଶ ବାକ୍ୟଦୋଷ—ଚତୁର୍ଦ୍ଦଶ ଅର୍ଥଦୋଷ, ଗୁଣ ଓ ରୀତି ।

୩ୟ ଅଧ୍ୟାୟ—ତେଷଠି ଅର୍ଥାଳଂକାର ।

୪ର୍ଥ ଅଧ୍ୟାୟ—ଛ ଗୋଟି ଶବ୍ଦାଳଂକାର ଓ ସେମାନଙ୍କର ଭେଦ ।

୫ମ ଅଧ୍ୟାୟ—ରସ, ଭାବ, ବିଭାବ, ଅନୁଭାବ, ନାୟକ ନାୟିକା ଓ ରସଦୋଷ ।

ଏଥିପୂର୍ବେ ଯେଉଁ ବାଗ୍‌ଭଟ୍ଟଙ୍କ କଥା କୁହାଯାଇଛି, ସେ ହେଉଛନ୍ତି ସୋମଶ୍ରୀର ପୁଅ । ଅନ୍ୟ ଏହି ବାଗ୍‌ଭଟ୍ଟଙ୍କ ପିତା ଥିଲେ ନେମିକୁମାର । କେତେକ ପଣ୍ଡିତ ଅନୁମାନ କରନ୍ତି, ଉକ୍ତ ବାଗ୍‌ଭଟ୍ଟ ଋଷଭଦେବ ଚରିତ ନାମରେ ଖଣ୍ଡିଏ ମହାକାବ୍ୟ ଏବଂ ଛନ୍ଦୋନୁଶାସନ ନାମକ ଖଣ୍ଡିଏ ଛନ୍ଦୋଗ୍ରନ୍ଥ ପ୍ରଣୟନ କରିଥିଲେ । ସେ ଜଣେ ଜୈନ ଧର୍ମାବଲମ୍ବୀ ଥିଲେ । ତାଙ୍କର ବାସଭୂମି ଅଦ୍ୟାପି ନିଃସନ୍ଦେହରେ ଜଣାପାଉ ନାହିଁ । ମେଦପାଟ ଦେଶ ଓ

ସହଡପୁର ତଥା ନନ୍ଦୋଷ୍ୱର ନାମକ ଦୁଇଟି ନଗରର ନାମ ସେ ଉଲ୍ଲେଖ କରିଛନ୍ତି । ଏହାଙ୍କର ଗ୍ରନ୍ଥଟିର ପ୍ରଧାନ ଅଲୋଚ୍ୟ ବିଷୟ ଅଳଂକାର ଶାସ୍ତ୍ର ହେଲେ ମଧ୍ୟ ସେ ଚର୍ଚ୍ଚିରେ କେତେକ ଭୌଗୋ-ଳିକ ଓ ଅୟୁର୍ବେଦିକ ତଥ୍ୟ ସନ୍ନିବେଶିତ କରିଛନ୍ତି । ସେ ଭାରତୀୟ ଅନେକ ପ୍ରଦେଶର ନାମ ଲେଖି କେଉଁ କେଉଁ ପ୍ରଦେଶରେ କେଉଁ କେଉଁ ପ୍ରଧାନ ନଦୀ ଅଛି, କେଉଁଠାରେ କ କ ଔଷଧି ମିଳେ ଏ ସବୁର ଏକ ବିବରଣୀ ଦେଇଛନ୍ତି । କାବ୍ୟାନୁ-ଶାସନର ମୌଳିକତା ଯେତେ ଅନ୍ୟର ଅହରଣ ଓ ସଂଗ୍ରହ ତାଠାରୁ ବହୁଗୁଣରେ ଅଧିକ । କାବ୍ୟ ପ୍ରକାଶ ଓ କାବ୍ୟ ମୀମାଂସାର ପ୍ରଭାବ ପ୍ରାୟ ସର୍ବତ୍ର ପରିଦୃଷ୍ଟ ହୁଏ ।

ଉଲ୍ଲିଖିତ ଗ୍ରନ୍ଥ :—

ସେ ଉଲ୍ଲେଖ କରିଥିବା କବି ବା ଗ୍ରନ୍ଥ ମଧ୍ୟରେ ଦଣ୍ଡୀ, ଭାମହ, ବାଗ୍‌ଭଟ୍ଟ * ଶୃଙ୍ଗାର ତିଳକ, ନେମି ନିର୍ମାଣ, ହ୍ରୀମକାବ୍ୟ, ଚନ୍ଦ୍ରପ୍ରଭ କାବ୍ୟ, ଅବ୍ଧି ମନ୍ଥନ, ବାସବଦତ୍ତା, ଲୀଳାବତୀ ପ୍ରଭୃତି ଅନ୍ୟତମ । ଗୋଟିଏ ମୂଳ ଗ୍ରନ୍ଥରେ ଲିଖନକାଳ ସଂବତ୍ ୧୫୧୫ ବା ଖ୍ରୀ: ୧୪୫୮-୫୯ ଲେଖିଥିବାରୁ ଓ ଏଥିରେ ଦ୍ୱାଦଶ ଶତାବ୍ଦୀର ଲେଖମାନ ଉଦ୍ଧୃତ ହୋଇଥିବାରୁ ଏହାଙ୍କୁ ତ୍ରୟୋଦଶ କିମ୍ବା ଚତୁର୍ଦ୍ଦଶ ଶତାବ୍ଦୀରେ ଅବସ୍ଥାପିତ କରାଯାଇ ପାରେ ।

## ସାହିତ୍ୟ ରତ୍ନାକର

ପର୍ବତନାଥଙ୍କ ପୁତ୍ର ଧର୍ମସୂରି ଏହାର ପ୍ରଣେତା । ଗ୍ରନ୍ଥଟି ଦଶଗୋଟି ତରଙ୍ଗରେ ବିଭକ୍ତ । ଗ୍ରନ୍ଥକାର ଜଣେ ଦକ୍ଷିଣୀ ଥିବା

* ଦଣ୍ଡୀ ବାମନ ବାଗ୍‌ଭଟ୍ଟାଦି ପ୍ରଣୀତା ଦଶକାବ୍ୟଗୁଣାଃ—କାବ୍ୟାନୁଶାସନ ।

ଅନୁମିତ ହୁଏ । ଦକ୍ଷମା ଧର୍ମସୂରିଙ୍କ ମାତା ' ଗ୍ରନ୍ଥର ରଚନା କାଳ ସ୍ପଷ୍ଟ ଜଣା ନ ଗଲେ ମଧ୍ୟ ବିଦ୍ୟାନାଥଙ୍କ ନାମୋଲ୍ଲେଖ ଥିବାରୁ ସର୍ବଥା ଚତୁର୍ଦ୍ଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ନୁହେଁ । ଅନ୍ୟ ଏକ ଦିଗରୁ ଏହାଙ୍କର ସମୟ ନିରୂପଣ କରାଯାଇ ପାରେ । ଅଳଂକାର କୌମୁଦୀ—( ବଲ୍ଲଭ ଭଟ୍ଟ ରଚିତ ) ରେ ଯେପରି ପ୍ରତି ଉଦାହରଣ ଶ୍ଳୋକରେ ରାମ ଶବ୍ଦ ରହିଛି, ସାହିତ୍ୟ ରତ୍ନାକର-ଲେଖକ ସେହି-ପରି ରାମଶବ୍ଦ ବା ରାମଙ୍କ ଚରିତ ବିନ୍ୟାସ କରି ପ୍ରତ୍ୟେକ ଉଦାହରଣ ଶ୍ଳୋକ ରଚନା କରିଛନ୍ତି । ସେ ଲେଖିଛନ୍ତି:—

"ଅଳଂକ୍ରିୟାଃ ପୂର୍ବତରୈଃ ପ୍ରଣୀତା
ନ ଯୋଜିତା କଣ୍ଠେ ନାୟକେନ
କେଚିତ୍ତୁ କ୍ଷୁଦ୍ରେମ୍ବର ଭର୍ତ୍ତବନ୍ଧାଃ
କ୍ଷୋଦୀୟ ସା କଣ୍ଠେ ନାୟକେନ ।"

ଉତ୍କଳର ବିଖ୍ୟାତ ପଣ୍ଡିତ ପୁରୀ ବଳଭଦ୍ରପୁର ଶାସନନିବାସୀ ଶ୍ରୀ ମଧୁସୂଦନ ମିଶ୍ର ସାହିତ୍ୟ ରତ୍ନାକରର 'ନୌକା' ନାମକ ନିଜ ଟୀକାରେ ଏଠାରେ ଲେଖିଛନ୍ତି ଯେ ରୁଦ୍ରଟ ପ୍ରମୁଖ ପ୍ରାଚୀନ ଅଳଂ-କାରିକମାନେ କୌଣସି ନାୟକର ଅବଲମ୍ବନରେ ଅଳଂକାର ଗ୍ରନ୍ଥ ପ୍ରଣୟନ କରି ନାହାନ୍ତି । ଅର୍ଥାତ୍ ସେମାନେ କୌଣସି ଜଣେ ପ୍ରସିଦ୍ଧ ନାୟକର ଗୁଣ କୀର୍ତ୍ତନ କରି ସ୍ୱୀୟ ଗ୍ରନ୍ଥରେ ଆବଶ୍ୟକ ସ୍ଥଳରେ ଶ୍ଳୋକ ରଚନା ପୂର୍ବକ ଉପସ୍ଥାପନ କରି ନାହାନ୍ତି । ବିଦ୍ୟାନାଥ ( ପ୍ରତାପ ରୁଦ୍ରୀୟର ପ୍ରଣେତା ) ପ୍ରଭୃତି ଯେଉଁମାନେ ମଧ୍ୟ ଜଣେ ନାୟକର ଅବଲମ୍ବନରେ ଲେଖି ଛନ୍ତି, ସେମାନଙ୍କ ନାୟକ ଅତି କ୍ଷୁଦ୍ର । ତେଣୁ ଧର୍ମସୂରି ଅସାଧାରଣ ନରପତି ରାମଚନ୍ଦ୍ରଙ୍କର ଅବଲମ୍ବନରେ ନିଜର ସମସ୍ତ ଶ୍ଳୋକ ଲେଖିଛନ୍ତି ।

ଅନ୍ୟତ୍ର ଅନୁମିତ ହୋଇଛି, ପଞ୍ଚଦଶ ଶତାବ୍ଦୀର ଶେଷଭାଗ ବା ଷୋଡ଼ଶ ଶତାବ୍ଦୀର ମଧ୍ୟ ଭାଗରେ ଜୀବିତ ଥିବା ସାହିତ୍ୟ କୌମୁଦୀର ଲେଖକ ବିଖ୍ୟାତ ଦ୍ୱୈତ ପଣ୍ଡିତ ବଳଦେବ ବିଦ୍ୟାଭୂଷଣ ବୃତ୍ତିକୁ ଅବଲମ୍ବନ କରି ନିଜ ଗ୍ରନ୍ଥ ରଚନା କରିଛନ୍ତି । ଧର୍ମସୂରି ଯେବେ ଏହାଙ୍କ ପରବର୍ତ୍ତୀ ହୋଇଥାନ୍ତେ ତେବେ ଉପରେ ଉଦ୍ଧୃତ ହୋଇଥିବା ଶ୍ଲୋକରେ ତାଙ୍କର ସେହି ଭାବ ପ୍ରତିଫଳିତ ତାହା ନିରର୍ଥକ ହୁଅନ୍ତା । ତେଣୁ ସାହିତ୍ୟ କୌମୁଦୀର ପରବର୍ତ୍ତୀରୁ ସେ ସାହିତ୍ୟରତ୍ନାକର ଗୃହୀତ ହୋଇପାରିବ ନାହିଁ । ବିଶ୍ୱନାଥଙ୍କ ସୂଚନା ନ ଥିବାରୁ ବୈଦ୍ୟନାଥଙ୍କ ପରବର୍ତ୍ତୀ ଓ ବଳଦେବଙ୍କ ପୂର୍ବବର୍ତ୍ତୀ ହେବାରୁ ତାଙ୍କୁ ୧୫ ଶ ଶତାବ୍ଦୀର ପୂର୍ବାର୍ଦ୍ଧର ଲେଖକ ବୋଲି ଧରିଯାଇ ପାରେ । ସାହିତ୍ୟ ରତ୍ନାକରର ବିଷୟବସ୍ତୁ ତରଙ୍ଗ ଅନୁକ୍ରମେ ପ୍ରଦତ୍ତ ହେଲା :—

୧ମ ତରଙ୍ଗ—ସ୍ୱଗ୍ରନ୍ଥ ପ୍ରବେଚନା ଓ କାବ୍ୟଫଳ ।

୨ୟ ,,—ନାୟକ ନାୟିକା ଓ କାବ୍ୟଲକ୍ଷଣ ।

୩ୟ ,,—ଲକ୍ଷଣା—ଜହତ୍ ସ୍ୱାର୍ଥା—ଅଜହତ୍ସ୍ୱାର୍ଥା ଲକ୍ଷଣା ।

୪ର୍ଥ ,,—ବ୍ୟଞ୍ଜନା ବିଚାର—ବ୍ୟଞ୍ଜନାଭେଦ ।

୫ମ ,,—ଗୁଣାଲଂକାର ଲକ୍ଷଣ—ଗୁଣଭେଦ ।

୬ଷ୍ଠ ,,—ଶବ୍ଦାଲଂକାର—ଚିତ୍ରାଲଂକାର ।

୭ମ ,,—ଅର୍ଥାଲଂକାର ।

୮ମ ,,—ପଦଦୋଷ, ବାକ୍ୟଦୋଷ, ଅର୍ଥଦୋଷ ।

୯ମ ,,—କାବ୍ୟଭେଦ, ଅଲଂକାରମାନଙ୍କର ବ୍ୟଙ୍ଗ୍ୟତ୍ୱ ବିଚାର, ଗୁଣୀଭୂତ ବ୍ୟଙ୍ଗ—ରୀତି ଶଯ୍ୟା ।

୧୦ମ ,,—ରସ—ରସଭେଦ—ରସାଭାସ ଲକ୍ଷଣ—ଭାବାଦି—ଲକ୍ଷଣ—

ସାହିତ୍ୟ-ରତ୍ନାକର ଏକ ଅଲଂକାର ଗ୍ରନ୍ଥ ହେଲେ ସୁଦ୍ଧା ତହିଁରେ ଥିବା ଶ୍ଳୋକ ଗୁଡ଼ିକ ବଡ଼ ଲଳିତ, ମଧୁର ଓ ଲେଖକଙ୍କ ଅସାଧାରଣ କବିତ୍ୱର ପରିଚାୟକ । ଉଚ୍ଛ୍ୱାସ ଓ କାନ୍ତ କୋମଳ ପଦାବଳୀର ଏକତ୍ର ସମାବେଶ କରି ଧର୍ମସୂରି କବି ଜଗତରେ ନିଜ ନାମ ଅମର କରିଛନ୍ତି, ଯଦ୍ୟପି ତାଙ୍କ ଗ୍ରନ୍ଥର ବହୁଳ ପ୍ରଚାର ( ଅଲଙ୍କାର ଗ୍ରନ୍ଥରୂପେ ) ହୋଇ ନାହିଁ । ଲକ୍ଷ୍ମଣ ସୂରିଙ୍କ ମନର ଏହାର ଅନ୍ୟ ଏକ ଟୀକା ।

## ସାହିତ୍ୟ-ଦର୍ପଣ

ଏ ଗ୍ରନ୍ଥର ଲେଖକ ହେଉଛନ୍ତି ଉତ୍କଳୀୟ ପଣ୍ଡିତ ବିଶ୍ୱନାଥ । ପୁରୁଷାନୁକ୍ରମେ ଏହାଙ୍କ ପିତୃ ପିତାମହ ବିଦ୍ୱାନ୍ ଥିଲେ । ଆଜି ସାରା ଭାରତରେ କାହିଁକି ସମଗ୍ର ଜଗତରେ ଯେଉଁ ସ୍ଥାନରେ, ଯେଉଁ ବିଦ୍ୟାପୀଠରେ ଅଲଂକାର ଶାସ୍ତ୍ରର ଆଲୋଚନା ହେଉଛି, ସେଠାରେ ସାହିତ୍ୟ-ଦର୍ପଣ ଏକମାତ୍ର ଉତ୍କୃଷ୍ଟ ସର୍ବଶ୍ରେଷ୍ଠ ଅଲଂକାର ଗ୍ରନ୍ଥରୂପେ ପୂଜା ପାଉଛି । ଅଧୁନା ଉତ୍କଳୀୟର ପ୍ରାଣରେ 'ଅଜି ବିଶ୍ୱନାଥ କମ ଉନ୍ମାଦନା ଓ ପ୍ରେରଣାରୂପକ ସୁଧା ଢାଳି ଦେଉ ନାହାନ୍ତି । ଚନ୍ଦ୍ରଶେଖର ବିଶ୍ୱନାଥଙ୍କ ପିତା । ସେ ପୁଷ୍ପମାଳା ଓ ଭାଷାର୍ଣ୍ଣବ ନାମକ ଦୁଇଖଣ୍ଡ ଗ୍ରନ୍ଥ ରଚନା କରିଥିଲେ । ଏହା ବିଶ୍ୱନାଥଙ୍କ ଲେଖାରୁ ଜଣାଯାଏ । ବିଶ୍ୱନାଥ ବହୁ ଶ୍ଳୋକ ନିଜେ ରଚନା କରି ଉଦାହରଣ ଦେଇଛନ୍ତି ଏବଂ ଅନ୍ୟମାନଙ୍କ ଶ୍ଳୋକ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ନିଜ ପିତା ଓ ପ୍ରପିତାମହଙ୍କ ରଚନାମାନ ମଧ୍ୟ ଉପସ୍ଥାପିତ କରିଛନ୍ତି*

---

*ଯଦାହୁରସ୍ମଦ୍ ବୃଦ୍ଧ ପ୍ରପିତାମହ ସହୃଦୟ ଗୋଷ୍ଠୀ ଗରିଷ୍ଠ କବି ପଣ୍ଡିତ ମୁଖ୍ୟ ଶ୍ରୀମନ୍ନାରାୟଣ ପାଦୈରୁକ୍ତମ୍ ( ସା: ଦ. ୩ୟ ) ଅସ୍ମତ୍ ପିତାନୁଜ କବି ପଣ୍ଡିତ ମୁଖ୍ୟ ଶ୍ରୀ ଚଣ୍ଡୀଦାସ ପାଦାନାମ୍" ( ସା: ଦ: ୨ୟ )

ବିଶ୍ୱନାଥ କବିରାଜ ଯେ ଧୁରୀଣ ଆଲଂକାରିକ ଥିଲେ ତାହା ନୁହେଁ, ସବୁ ବିଷୟରେ ତାଙ୍କର ବ୍ୟୁତ୍ପନ୍ନ ପାଣ୍ଡିତ୍ୟ ଥିଲା । ସାହିତ୍ୟ-ଦର୍ପଣ ଛଡ଼ା ସେ ରାଘବବିଳାସ, କୁବଳୟାଶ୍ୱଚରିତ (ପ୍ରାକୃତ ଭାଷାରେ), ପ୍ରଭାବତୀ ନାଟିକା, ଚନ୍ଦ୍ରକଳା-ନାଟିକା, ପ୍ରଶସ୍ତିରତ୍ନାବଳୀ ( ଷୋଳ ପ୍ରକାର ଭାଷା ବ୍ୟବହୃତ ହୋଇଥିବା ଏକ କରଂମ୍ଭକ) ନରସିଂହ ବିଜୟ ଓ କାବ୍ୟପ୍ରକାଶ ଉପରେ "କାବ୍ୟପ୍ରକାଶ-ଦର୍ପଣ" ନାମକ ଏକ ଟୀକା ଲେଖିଥିଲେ । ଚଣ୍ଡୀଦାସ ବିଶ୍ୱନାଥଙ୍କ ଗୋସାଇଁ ବାପା ଥିଲେ ଓ ସେ ମଧ୍ୟ କାବ୍ୟପ୍ରକାଶ ଉପରେ ଗୋଟିଏ ଟୀକା ଲେଖିଥିଲେ ।

ଏ ଗ୍ରନ୍ଥର ଦ୍ୱିତୀୟ ପରିଚ୍ଛେଦରେ ସାହିତ୍ୟ-ଦର୍ପଣ ଗତ ବିଷୟମାନଙ୍କର ଏକ ସୂଚୀ ଦିଆ ଯାଇଛି । ତାହା ପାଠ କଲେ ଅନ୍ୟ ଗ୍ରନ୍ଥ ତୁଳନାରେ ଉକ୍ତ ଗ୍ରନ୍ଥର ବିଶେଷତ୍ୱ କେତେକ ପରିମାଣରେ ଜାଣି ହେବ ।

ତଥାପି ଏଠାରେ ସ୍ପଷ୍ଟଭାବେ ବୁଝାଇ ଦେବା ଦରକାର ଯେ ସାହିତ୍ୟ-ଦର୍ପଣ ଆଜି ଏତେ ସର୍ବ ଜନପ୍ରିୟ ଓ ସର୍ବ ସମ୍ମାନଭାଜନ ହୋଇ ପାରିଛି କାହିଁକି ? ଅନ୍ୟ ଗ୍ରନ୍ଥମାନଙ୍କର ବିଷୟର ସୂଚୀ ତୃତୀୟ ପର୍ବରେ ଅତି ସଂକ୍ଷିପ୍ତଭାବେ ଦିଆଯାଇଥିବାରୁ ଦର୍ପଣର ବିଶେଷତ୍ୱ ସହିତ ଗୁଡ଼ିକର ତୁଳନାତ୍ମକ ବିଚାର ହୁଏ ତ ଆଦୌ ଭଲ ବୁଝି ହେବ ନାହିଁ । ତଳେ ଅନ୍ୟମାନଙ୍କର ତୁଳନାରେ ଦର୍ପଣର ବିଶେଷତ୍ୱର ଦୁଇଟି ସ୍ପଷ୍ଟ ସୂଚନା ଦିଆଯାଇଛି ।

(କ) ଏ ଗ୍ରନ୍ଥର ଦ୍ୱିତୀୟ ପରିଚ୍ଛେଦରେ ଅଲଂକାର ଗ୍ରନ୍ଥ-ମାନଙ୍କର ଯେଉଁ ଅଠଗୋଟି ବିଭାଗ କରାଯାଇଛି, ତାହା ଆଲୋଚନା କଲେ ଜଣାଯାଏ, ଅଲଂକାର ଶାସ୍ତ୍ରରେ କେବଳ ଅଲଂକାର

ବା କେବଳ 'ରସ' ବିଷୟକ ଅଲୋଚନା ଅଳଂକାର ଶାସ୍ତ୍ରର ବହୁ ବିସ୍ତୀର୍ଣ୍ଣ କଥା ମଧ୍ୟରେ ଗୋଟିଏ ଗୋଟିଏ ସ୍ଥାନ ପୂରଣ କରନ୍ତି ମାତ୍ର । ଏ ଦୃଷ୍ଟିରୁ ଦେଖିଲେ ଯେଉଁ ଶତାଧିକ ମୌଳିକ ଅଳଂକାର ଗ୍ରନ୍ଥର ନାମ ଓ ସେ ମଧ୍ୟରୁ ବହୁ ଗ୍ରନ୍ଥର ବିଚାର ଆମର ଏ ପର୍ଯ୍ୟନ୍ତ ଶ୍ରୁତିଗୋଚର ହୋଇଛି, ସେ ମଧ୍ୟରେ ସକଳ ବିଷୟର ବିଚାରରେ ପୁଷ୍କଳ, ସର୍ବାଙ୍ଗ ସୁନ୍ଦର ଓ ସମ୍ପୂର୍ଣ୍ଣ ଗ୍ରନ୍ଥର ସଂଖ୍ୟା ଅତି କମ୍, ଅତି ନଗଣ୍ୟ । ଏପରିକି ଏକ୍ଷେଳ ଗ୍ରନ୍ଥ ସଂଖ୍ୟା ବୋଧହୁଏ ତିନି ଚାରିରୁ ଅଧିକ ନୁହେଁ । ସମସ୍ତ ବିଷୟ ଥିବା ବିଦ୍ୟାନାଥଙ୍କ ପ୍ରତାପରୁଦ୍ରୀୟଠାରୁ ସାହିତ୍ୟ-ଦର୍ପଣର ବିଚାର ପ୍ରଣାଳୀ ବହୁଗୁଣରେ ଅଧିକ ବୋଲି ପଣ୍ଡିତମାନଙ୍କର ମତ । ପୁଣି ଏଠାରେ ସୂଚାଇ ଦେବା ଆବଶ୍ୟକ ଯେ ଧ୍ୱନ୍ୟାଲୋକ, ବକ୍ରୋକ୍ତି ଜୀବିତ, ଅଳଙ୍କାର ସର୍ବସ୍ୱ, କାବ୍ୟାଳଂକାର ସୂତ୍ର ଯେତେ ବିସ୍ତୃତ ପୂର୍ଣ୍ଣ ହୁଅନ୍ତୁ ପଛେ, ସେମାନଙ୍କର ପରିସର ଓ କଳେବର ବଡ଼ ସଂକୀର୍ଣ୍ଣ ।

(ଖ) ଲେଖକର ଦକ୍ଷତା ଦିଗରୁ ଗୋଟିଏ କଥା ପ୍ରକାଶ ପାଏ, ଯାହା ସାହିତ୍ୟ ଦର୍ପଣର ଉତ୍କର୍ଷ ସାଧକ । ଧ୍ୱନ୍ୟାଲୋକ ପ୍ରଭୃତିରେ ଖଣ୍ଡନ ମଣ୍ଡନ ପଦ୍ଧତିର ପ୍ରାଧାନ୍ୟ ହେତୁ ପାଠକ ପ୍ରତି ପଦ କ୍ଷେପରେ ପ୍ରତିବନ୍ଧ ହୁଏ । କିନ୍ତୁ ସାହିତ୍ୟ-ଦର୍ପଣକାର ସେସବୁ ପଢ଼ି, ବୁଝି ବଡ଼ ସ୍ପଷ୍ଟଭାବରେ ସାରକଥା ଦେଇଛନ୍ତି । ସେ ଯେ ଅନ୍ୟମାନଙ୍କ ମତ ଖଣ୍ଡନ କରି ନାହାନ୍ତି, ତାହା ନୁହେଁ, କିନ୍ତୁ ଯାହା କହିଛନ୍ତି, ତାହା ବଡ଼ ସଂଯତ, ସରଳ ଓ ସମୀଚୀନ ଭାବରେ କହିଛନ୍ତି । ଅଧ୍ୟୟନ କଲାବେଳେ ପାଠକ ଗ୍ରନ୍ଥକାଠିନ୍ୟ ବା ଗାମ୍ଭୀର୍ଯ୍ୟରେ ଭଗ୍ନମନା ନ ହୋଇ ଅଗ୍ରହାନ୍ୱିତ ହୁଏ । ରସଗଙ୍ଗାଧର ପ୍ରଭୃତି ସଙ୍ଗେ ତୁଳନା କଲେ ଶେଷରେ ସେହି କଥା ସ୍ୱୀକାର କରିବାକୁ ହେବ ।

ପଣ୍ଡିତରାଜ ଜଗନ୍ନାଥଙ୍କ ରସଗଙ୍ଗାଧର କୌଣସି ଗୁଣରେ ଦର୍ପଣ ଠାରୁ ନ୍ୟୂନ ହେବ ନାହିଁ । ବରଂ ସ୍ଥଳ ବିଶେଷରେ ମହନୀୟ ବିବେଚିତ ହେବ । ତଥାପି ରସଗଙ୍ଗାଧରର ଭାଷାଗତ ଆଡ଼ମ୍ବର, ଅନର୍ଗଳ ଖଣ୍ଡନ, ପ୍ରାଚୀନ ଲେଖକଙ୍କ ଉପରେ କଠୋର ସମାଲୋଚନାର ପ୍ରହାର—ଏସବୁ ସର୍ବସାଧାରଣରେ ପାଠକମଣ୍ଡଳୀର ଉପକାରପ୍ରଦ ହୋଇଥାଏ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହିପରି କାବ୍ୟ ପ୍ରକାଶରେ ଅତି ସଂକ୍ଷିପ୍ତ ଓ ପୁଞ୍ଜୀକୃତ ମତବାଦ ଦର୍ଶନର ତୁଳନାରେ ପାଠକସମାଜର ଉତ୍ସାହ ବର୍ଦ୍ଧକ ହୋଇ ନ ଥାଏ । ଦର୍ପଣରେ ସମସ୍ତ ବିଷୟର ସଦ୍‌ଭାବ ସତ୍ତ୍ୱେ ଅଭିବ୍ୟକ୍ତି ମଧୁର ଓ ଲଳିତ, ଲଗନ ଭଙ୍ଗୀ ପାଠକଙ୍କର ଧୀଶକ୍ତିବର୍ଦ୍ଧକ ଓ ଚିତ୍ତ-ଉଲ୍ଲାସକ ।

ସମୟ— .

ଉତ୍କଳର ସୁନାମଧନ୍ୟ ରାଜା ପୁରୁଷୋତ୍ତମ ଦେବଙ୍କର ବିଶ୍ୱନାଥ ଥିଲେ ସାନ୍ଧିବିଗ୍ରହିକ ମହାପାତ୍ର । ତେଣୁ ସେ ପଞ୍ଚଦଶ ଶତାବ୍ଦୀର ( ଖ୍ରୀ: ୧୪୬୫—୯୫ ) ଶେଷ ଭାଗରେ ଜୀବିତ ଥିଲେ । ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଶାସନ କରୁଥିବା ଗଙ୍ଗଭାନୁ ନରସିଂହଙ୍କ ରାଜସଭାରେ ବିଶ୍ୱନାଥଙ୍କ ପିତାମହ ପଣ୍ଡିତ ଥିବା ତାଙ୍କ ନିଜ ଲେଖାରୁ ଜଣାପଡ଼େ । ବିଶ୍ୱନାଥ କାବ୍ୟପ୍ରକାଶ ଉପରେ ଦର୍ପଣ ନାମକ ଯେଉଁ ଟୀକା ଲେଖିଥିଲେ ତହିଁରେ ସ୍ପଷ୍ଟ ଉଲ୍ଲେଖ ଅଛି:—"ଯଦାହୁଃ ଶ୍ରୀକଳିଙ୍ଗ ଭୂମଣ୍ଡଳାଖଣ୍ଡଳ ମହାରାଜାଧିରାଜ ଶ୍ରୀ ନରସିଂହ ଦେବ ସଭାୟାଂ...ଅସ୍ମତ୍ ପିତାମହ ଶ୍ରୀମନ୍ନାରାୟଣ ଦାସ ପାଦାଃ ।" ଏଠାରେ ଯଥା ସମ୍ଭବ ଗ୍ରନ୍ଥକାରଙ୍କ ପିତାମହ ସ୍ଥଳେ ଭୁଲକ୍ରମେ 'ପ୍ର' ଟି ଛୁଟି ଦେଇଛନ୍ତି । କାରଣ 'ଛ' ଜଣ ମଧ୍ୟରୁ ଶେଷ ନରସିଂହ ଖ୍ରୀ· ୧୩୨୯ ରେ ପ୍ରାଣତ୍ୟାଗ କରିଥିଲେ ଏବଂ

ତାଙ୍କର ପ୍ରାୟ ଦେଢ଼ଶତ ବର୍ଷ ପରେ ପୁରୁଷୋତ୍ତମଙ୍କ ସଙ୍ଗରେ ବିଶ୍ୱନାଥ ଥିଲେ । ଏ ସଂବଂଧେ ଅନ୍ୟ କେତେକ ମତ ମଧ୍ୟ ଅଛି । ମୋର ନିରୂପିତ କାଳ ମଧ୍ୟ ପରୀକ୍ଷଣୀୟ ।

ସାହିତ୍ୟ-ଦର୍ପଣର ଟୀକାକାର ମାନଙ୍କ ମଧ୍ୟରେ ଅନନ୍ତଦାସ, ରାମ ଚରଣ, ମଥୁରାନାଥ ଶୁକ୍ଳ, ଗୋପୀନାଥ, ଓ ଶିବଦାସ ଓ ମହେଶ୍ୱର ତର୍କାଳଂକାରଙ୍କ ନାମ ଉଲ୍ଲେଖ୍ୟ ।

## ଅଳଂକାର-କୌସ୍ତୁଭ

କବି କର୍ଣ୍ଣପୂର ଏହାର ପ୍ରଣେତା । ଏ ଗ୍ରନ୍ଥଟି ଦଶଗୋଟି କିରଣରେ ବିଭକ୍ତ । ଅଳଂକାରମାନଙ୍କ ବିଚାର ଏଥିରେ ମୁଖ୍ୟ ସ୍ଥାନ ପାଇଛି । ଗ୍ରନ୍ଥକାର ନିଜେ 'କିରଣ' ନାମକ ଏକ ଟୀକା ଏହା ଉପରେ ଲେଖିଥିଲେ । କବିଙ୍କର ବ୍ୟକ୍ତିଗତ ଇତିହାସ ଯଦ୍ୟପି ବିଶେଷ ଜଣାଯାଉ ନାହିଁ, ତଥାପି ସେ ନିଶ୍ଚୟ ବୈଷ୍ଣବ ଧର୍ମାବଲମ୍ବୀ ଥିବା ଅନୁମିତ ହୁଏ । ବୃନ୍ଦାବନ ଚନ୍ଦ୍ର ତର୍କାଳଂକାର ଏହା ଉପରେ 'ଦୀଧିତି' ନାମକ ଏକ ସରଳ ଟୀକା ଲେଖି ଯାଇଛନ୍ତି । ଅନୁସନ୍ଧାନରୁ ଜଣାଯାଉଛି ବିଶ୍ୱନାଥ ଚକ୍ରବର୍ତ୍ତୀ ଓ ଲୋକନାଥ ଚକ୍ରବର୍ତ୍ତୀ ମଧ୍ୟ ଏହାର ଅନ୍ୟ ଦୁଇ ଟୀକାକାର । ଲେଖକ ବହୁ ଗ୍ରନ୍ଥର ମତ ଉଦ୍ଧାର କରିଥିଲେ ମଧ୍ୟ ରୂପ୍ୟ ଗୋସ୍ୱାମୀଙ୍କ ଦ୍ୱାରା ବେଶୀ ପରିମାଣରେ ପ୍ରଭାବିତ ହୋଇଛନ୍ତି । ଗ୍ରନ୍ଥଟିର ରଚନାକାଳ ହେଉଛି ଯଥାସମ୍ଭବ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗ ।

ବେଙ୍କଟାଚାର୍ଯ୍ୟ ନାମକ ଜଣେ ଦକ୍ଷିଣୀ ପଣ୍ଡିତ ଅଳଂକାରକୌସ୍ତୁଭ ନାମରେ ଅନ୍ୟ ଏକ ଗ୍ରନ୍ଥ ଲେଖିଥିବା ଜଣାଯାଏ ।

## କୁବଳୟାନନ୍ଦ ଓ ଚିତ୍ର ମୀମାଂସା

ସପ୍ତଦଶ ଶତାବ୍ଦୀ ବାସ୍ତବରେ ଦୁଇଜଣ ବରେଣ୍ୟ ଅଳଂକାରିକ ସୃଷ୍ଟି କରିଛି । ଅନେକଗୁଡ଼ିଏ ଗ୍ରନ୍ଥ ଦୁଇଟିର ଲେଖକ ଅପ୍ପୟ ଦୀକ୍ଷିତ ଶତାଧିକ ଗ୍ରନ୍ଥର ପ୍ରଣେତା ଓ ଅସାଧାରଣ କବି ଏବଂ ଆଳଂକାରିକ 'ପଣ୍ଡିତରାଜ' ଜଗନ୍ନାଥଙ୍କ ସମସାମୟିକ । ପଣ୍ଡିତରାଜଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ଦିଲ୍ଲୀଶ୍ୱର ସମ୍ରାଟ ଶାହାଜାହାନ୍ ତାଙ୍କୁ ସେହି ଉପାଧିରେ ଭୂଷିତ କରିଥିଲେ । ତେଣୁ ଏଠାରେ କବିଙ୍କର ଜୀବନ-କାଳ-ନିରୂପଣ ଆଦୌ ସନ୍ଦେହ-ସଙ୍କୁଳ ନୁହେଁ । କଥା ଅଛି, ଥରେ ବାରାଣସୀର କୌଣସି ଏକ ଘାଟରେ ପଣ୍ଡିତରାଜ ଜଗନ୍ନାଥ ନିଜର କେଶ ଉନ୍ମୁକ୍ତ କରି ନିଶ୍ଚିନ୍ତ ଭାବରେ ଶୋଇ ଅଛନ୍ତି ଏବଂ ଜାହ୍ନବୀର ଜଳରେ ସେହି କେଶ ପ୍ରାନ୍ତର ଅଗ୍ରଭାଗ ଅଳ୍ପ ଉଦ୍ଭାସିତ ହେଉଛି, ଏପରି ଅବସ୍ଥାରେ ଗଙ୍ଗାସ୍ନାନ ଉଦ୍ଦେଶ୍ୟରେ ସେଠାକୁ ଯାଇଥିବା ଅପ୍ପୟ ଦୀକ୍ଷିତ ଉପସ୍ଥିତ ହୋଇ ଜଗନ୍ନାଥଙ୍କୁ ସେପରି ଅବସ୍ଥାରେ ଦେଖି କହି ପକାଇଲେ :—"ଆପଣ ଶେଷ ବୟସରେ ଏପରି ନିର୍ଭୀକଭାବରେ କପରି ଶୋଇଛନ୍ତି ।" ହଠାତ୍ ଉତ୍ତର ମିଳିଲା, "ଅଚ୍ଛା ଶୁଅ, ଶୁଅ, ଶୁଅ, ନିକଟରେ ଗଙ୍ଗା ସଜାଗ ଅଛନ୍ତି ।" ପ୍ରଶ୍ନକର୍ତ୍ତା ବଡ ଲଜ୍ଜିତ ହେଲେ, କାରଣ ଉତ୍ତରଟି ଏପରି ଶବ୍ଦରେ ଅଭିବ୍ୟକ୍ତ ହେଲା ଯେ ତାହା ପ୍ରଶ୍ନକର୍ତ୍ତା ନିଜେ ନିଜମତ ହଠାତ୍ ଖଣ୍ଡନ କରି ଅନ୍ୟ ଏକ କଥା କହିଲା ପରି ହେଲା ।

ବୃତ୍ତିବାର୍ତ୍ତିକ ଦୀକ୍ଷିତଙ୍କର ଦ୍ୱିତୀୟ ଅଳଂକାର ଗ୍ରନ୍ଥ । ଏହା ଦୁଇ ଭାଗରେ ବିଭକ୍ତ । ପ୍ରଥମଟିରେ ଅଭିଧା ଓ ଦ୍ୱିତୀୟଟିରେ ଲକ୍ଷଣାର ବିଚାର ହୋଇଛି । କୁବଳୟାନନ୍ଦରେ ୧୨୪ ଅଳଂକାରର ଆଲୋଚନା ହୋଇଛି । ଚିତ୍ର ମୀମାଂସାରେ ପ୍ରଥମେ କାବ୍ୟର ବିଭାଗ କରାଯାଇଛି । ତାହାରେ ଅନନ୍ୱୟ, ସ୍ମରଣ, ରୂପକ, ପରିଣାମ

ସସନ୍ଦେହ, ଉଲ୍ଲେଖ, ଉତ୍ପ୍ରେକ୍ଷା ପ୍ରଭୃତି ଚାରିଗୋଟି କେବଳ ଉପମା ଅଳଂକାର ଉପରେ ପ୍ରତିଷ୍ଠିତ, ତାହା ଆଲୋଚିତ ହୋଇଛି ।

କୁବଳୟାନନ୍ଦ ଉପରେ ଅନେକ ଟୀକା ଲେଖାଯାଇଛି । ସପ୍ତଦଶ ଶତାବ୍ଦୀର ଶେଷଭାଗରେ 'ଚନ୍ଦ୍ରିକା' ନାମକ ଏକ ଟୀକା ଲେଖା ଯାଇଥିଲା । ଏହାଛଡ଼ା ନାଗେଶ ଭଟ୍ଟଙ୍କ ଷଟ୍‌ପଦାନନ୍ଦ, ଆଶାଧରଙ୍କ ଦୀପିକା, ଗଙ୍ଗାଧରଙ୍କ ରସିକରଞ୍ଜିନୀ, ବୈଦ୍ୟନାଥଙ୍କ ଅଳଂକାର ଚନ୍ଦ୍ରିକା ନାମ ଉଲ୍ଲେଖ୍ୟ । ମଥୁରାନାଥ ଅନ୍ୟ ଜଣେ ଟୀକାକାର । ଦୀକ୍ଷିତଙ୍କ ଗ୍ରନ୍ଥପ୍ରଣୟନ ପରେ ପରେ କୁବଳୟାନନ୍ଦର ଖଣ୍ଡନ କରି ଭୀମସେନ ଦୀକ୍ଷିତ କୁବଳୟାନନ୍ଦ ଖଣ୍ଡନ ଓ ଶବ୍ଦ ମୀମାଂସାର ତୀବ୍ର ସମାଲୋଚନା କରି ପଣ୍ଡିତରାଜ ଜଗନ୍ନାଥ ଶବ୍ଦ ମୀମାଂସାଖଣ୍ଡନ ଲେଖିଥିଲେ । ଶବ୍ଦମୀମାଂସା ଉପରେ ଶଙ୍କାଲୋକ ପାଣ୍ଡୁରଙ୍ଗଙ୍କ 'ଦୁର୍ବୋଧାର୍ଥ ପ୍ରକାଶିକା' ଓ ଧରାନନ୍ଦଙ୍କ ସୁଧା ପ୍ରଭୃତି ଟୀକା ଲେଖା ଯାଇଛି ।

## ରସଗଙ୍ଗାଧର

ଏହାର ଲେଖକ ପଣ୍ଡିତରାଜ ଜଗନ୍ନାଥ ଜଣେ ତେଲେଙ୍ଗା ବ୍ରାହ୍ମଣ । ବାସ୍ତବରେ ଜଗନ୍ନାଥଙ୍କ ସବୁ କଥା, ଅନ୍ୟନ୍ତ ଜନ୍ମହେବା ହିଁରେ ଥାଉ, କାଳିଦାସଙ୍କ ଜନ୍ମଭୂମି ଭାରତରେ ମଧ୍ୟ ବିରଳ । ଏହାଙ୍କ ରଚିତ ଗଙ୍ଗାଲହରୀର ତୁଲ୍ୟ କବିତା ସମଗ୍ର ସଂସ୍କୃତ ସାହିତ୍ୟରେ ନାହିଁ କହିଲେ ଚଳେ । ପୁଣି ନିଜର ପତ୍ନୀ ବିୟୋଗ ପରେ ସେ ଯେଉଁ 'ଭାମିନୀ ବିଳାସ' ଲେଖିଛନ୍ତି, ତାର ମୂଲ୍ୟ ସହୃଦୟ ଭିନ୍ନ ଅନ୍ୟ କିଏ ନିରୂପଣ କରି ପାରିବ ? ସଂସ୍କୃତ ସାହିତ୍ୟରେ ଏହାଙ୍କ ସ୍ଥାନ ଯେ କେତେ ଉଚ୍ଚରେ ତାହା ଭାଷାରେ

ଅଭିବ୍ୟକ୍ତ କରିବା [illegible] ନୁହେଁ । ନିଜର ଅସାଧାରଣ କବିତ୍ୱରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ନ ହେଲେ କି ଭାମିନୀ-ବିଳାସରେ ସେ ଲେଖିଥାନ୍ତେ—ଯାହାର (ନିଜର) କବିତାଙ୍କୁର ଶୁଣି ବାଗ୍‌ଦେବୀ ସରସ୍ୱତୀ ମଧ୍ୟ ନିଜର ବୀଣାବାଦନରେ ବୀତସ୍ପୃହ ହୋଇ ଯାଉଛନ୍ତି, ସେହି 'ପଣ୍ଡିତପତିଙ୍କର' ଗୀତ ଶୁଣି ଯେ କେବଳ 'ଅଃ ବାସ୍ତବିକ କି ସୁନ୍ଦର ହୋଇଛି' କହି ମୁଣ୍ଡ ହଲାଇ ନ ଦେଉଛି, ସେ ଏବେ ନିର୍ବିକାର ମହାଦେବ ବା ପଶୁପତି ହୋଇଥିବ ଅଥବା ସୌନ୍ଦର୍ଯ୍ୟ ଜ୍ଞାନଶୂନ୍ୟ ପଶୁ ହୋଇଥିବ । ତାଙ୍କ ମତରେ ରମଣୀୟାର୍ଥ ପ୍ରତିପାଦକ ଶବ୍ଦ ହେଉଛନ୍ତି କାବ୍ୟ । ସେ ପ୍ରଥମରେ କାବ୍ୟର ଲକ୍ଷଣ କହି ପରେ କାବ୍ୟ ହେତୁ ରୂପେ ପ୍ରତିଭାର ପ୍ରତିଷ୍ଠା କରିଛନ୍ତି । ତାପରେ କାବ୍ୟଭେଦ, ରସ, ଗୁଣ, ଭାବ, ରସାଭାସ, ଧ୍ୱନି, ଅଭିଧା, ଲକ୍ଷଣା ଓ ଶେଷରେ ପ୍ରାୟ ୭୦ ଅଳଂକାରର ଆଲୋଚନା କରିଛନ୍ତି । ଆନନ୍ଦବର୍ଦ୍ଧନ, ମମ୍ମଟ, ରୁଯ୍ୟକ ପ୍ରଭୃତି ବହୁ ଆଳଂକାରିକଙ୍କର ତୀବ୍ର ସମାଲୋଚନା କରିଛନ୍ତି । ରସଗଙ୍ଗାଧର ପଣ୍ଡିତ-ମଣ୍ଡଳୀର ଏକ ଗୌରବପ୍ରଦ ବସ୍ତୁ । ଯୁକ୍ତିର ସ୍ପଷ୍ଟତା, ବର୍ଣ୍ଣନର ପ୍ରଣାଳୀ, ଭାଷାର ଆଡମ୍ବର, ମୌଳିକତାର ପରାକାଷ୍ଠା, ଅନ୍ତର୍ଦୃଷ୍ଟିର ଗମ୍ଭୀରତାରେ ସେ କାହାରିଠାରୁ ନ୍ୟୂନ ନୁହନ୍ତି ।

ତାଙ୍କ ପ୍ରଣୀତ ଗ୍ରନ୍ଥ ସଂଖ୍ୟା ଦଶରୁ କମ ନୁହେଁ । ବିଖ୍ୟାତ ବ୍ୟାକରଣ-ଟୀକା 'ମନୋରମା'ର ସେ ମନୋରମା କୁଚମର୍ଦ୍ଦନ ନାମକ ଏକ ସମାଲୋଚନାତ୍ମକ ଗ୍ରନ୍ଥ ଲେଖିଥିଲେ ।

## ସାହିତ୍ୟ-ସାର

ଅଚ୍ୟୁତ ରାୟ ମୋଡ଼କଙ୍କ ସାହିତ୍ୟ-ସାର ବାସ୍ତବରେ ଏକ ସାରଗର୍ଭ ଗ୍ରନ୍ଥ । ନାସିକ ପଞ୍ଚବଟୀ ନିକଟରେ ଏହାଙ୍କର

ଇଲ୍ଲଭ ହୋଇଥିଲ । ଜନବଂଶ ଶତାବ୍ଦୀର ମଧ୍ୟଭାଗରେ ଉକ୍ତ ଗ୍ରନ୍ଥ ଲେଖା ଯାଇଥିଲ । ଗ୍ରନ୍ଥଟି ବାରଗୋଟି ରତ୍ନରେ ବିଭକ୍ତ । ତଳେ ଆଲୋଚିତ ବିଷୟମାନଙ୍କର ଏକ ସୂଚୀ ଦିଆଗଲ । :—

ଧନ୍ୱନ୍ତରୀ ରତ୍ନ—କାବ୍ୟ ହେତୁ, କାବ୍ୟସ୍ୱରୂପ ଓ କାବ୍ୟଭେଦ ।
ଐରାବତ ରତ୍ନ—ଶବ୍ଦଶକ୍ତି, ଅଭିଧା, ଲକ୍ଷଣା, ବ୍ୟଞ୍ଜନା ।
ପାରିଜାତ ରତ୍ନ—ବ୍ୟଞ୍ଜନାର ବିସ୍ତାର ।
ଦକ୍ଷିଣାବର୍ତ୍ତ କମ୍ବୁ ରତ୍ନ—ରସପ୍ରକରଣ-ଭାବ ସ୍ୱଭାବ ପ୍ରଭୃତି ।
ଅଶ୍ୱବର ରତ୍ନ—ଧ୍ୱନିର ଅନୁରଣ ଗୌଣାଦି ବ୍ୟଙ୍ଗ ଭେଦ ।
ବିଷ ରତ୍ନ—କାବ୍ୟ ଦୋଷ ନିରୂପଣ ।
ଚୂଣ ରତ୍ନ—ଗୁଣ ନିରୂପଣ ।
କୌସ୍ତୁଭ ରତ୍ନ—ଅଳଂକାର ବିସ୍ତାର ।
କାମ ଧେନୁ ରତ୍ନ—ଅଧମ କାବ୍ୟଭେଦ-ଚିତ୍ରକାବ୍ୟ ପ୍ରାସ ଇତ୍ୟାଦି ।
ରମ୍ଭାରତ୍ନ—ନାୟିକା ଭେଦ-ସ୍ତ୍ରୀ ମାନଙ୍କ ଭାବ ବିଶିଷ୍ଟ ଗୁଣ ।
ଚନ୍ଦ୍ର ରତ୍ନ—ନାୟକ ଭେଦ ।
ଅମୃତ ରତ୍ନ—ଉମା,ମହେଶ୍ୱର, ରାମ, ଗଣେଶ ପ୍ରଭୃତିଙ୍କ ବର୍ଣ୍ଣନା ।

ସରସାମୋଦ ହେଉଛି ଏହାର ପ୍ରଧାନ ପାଣ୍ଡିତ୍ୟପୂର୍ଣ୍ଣ ଟୀକା । ଅଚ୍ୟୁତରାୟ ମୋଡ଼କ ଭାରତ ବ୍ୟାପୀ ଖ୍ୟାତି ଲଭ କରିଥିଲେ ମଧ୍ୟ ଜଣେ ବଡ଼ ପଣ୍ଡିତ ଓ ଲେଖକ । ସାହିତ୍ୟ ସାରରେ ସେ ପ୍ରାଚୀନ ଅଳଂକାରିକମାନଙ୍କର ପରସ୍ପର ମତ ବିରୁଦ୍ଧତା ଦୂର କରିବାକୁ ଚେଷ୍ଟା କରିଛନ୍ତି ଏବଂ ବହୁ ସ୍ଥଳରେ ଆପାତ ବିରୁଦ୍ଧ ମତବାଦ ମାନଙ୍କର ସମନ୍ୱୟ କରିଛନ୍ତି । ସେ ଅନେକ ଖଣ୍ଡ ଗ୍ରନ୍ଥ ଉପରେ ଟୀକା ଲେଖିଛନ୍ତି ଓ ନିଜର ମୂଳଗ୍ରନ୍ଥରୁ ବେଶୀ ମୌଳିକ ଗ୍ରନ୍ଥ

ତଣ୍ଡୁଳନ କରିଛନ୍ତି । ସେ କବିଙ୍କର ଗ୍ରନ୍ଥ ମଧ୍ୟରେ ମୁକ୍ତାମାଳାଂକିତ୍ୟା,
ମଣିମଣ୍ଡ୍ୟାଦର୍ଶ, ଚିନ୍ତାମଣି ଚନ୍ଦ୍ରିକ, ଲାବଣ୍ୟ ଲହରୀ, ରଣରଙ୍ଗ ମାଧବ
ନାଟକ, ସୁରଙ୍ଗର ବିହାର ଗଣ, କୃଷ୍ଣଲୀଳା ମୃତ, ଦୁଃଖ ସଂସ୍ୟନ୍ଦ-
ଦାୟ, ସଂଯମ ସତ୍ ବୃତ୍ତି, ପ୍ରାରବ୍ଧାନ୍ତ ବିଧ୍ୱଂସନ, ସିଦ୍ଧା ନ୍ତରନୃସିଂହାନ୍ତ,
ଗୀତସୀତା ପତ୍ର, ରେବାସୀଙ୍କୂର୍ଣ ଲହରୀ ପ୍ରଭୃତିର ନାମ ଉଲ୍ଲେଖ୍ୟ ।
ତା ପରେ ଅମରକୋଷର ପ୍ରଥମକାଣ୍ଡ, ଦେବଯାନ ପଞ୍ଚକ; ଶୃଙ୍ଗାର
କଳିକା, ରୁକ୍ମିଣୀବିଳାସ, ସୌନ୍ଦର୍ଯ୍ୟ ଲହରୀ ପ୍ରଭୃତି ଉପରେ ସୁନ୍ଦର
ଟୀକା ଲେଖି ଯାଇଛନ୍ତି । ସାହିତ୍ୟ ସାର ଓ ଅନ୍ୟ ଗ୍ରନ୍ଥ ଗୁଡ଼ିକର
ନାମକରଣ ଦେଖିଲେ ମନେହୁଏ ସେ ବଡ଼ ଅନୁପ୍ରାସପ୍ରିୟ
ଥିଲେ । ସମଗ୍ର ସାହିତ୍ୟସାର ଗ୍ରନ୍ଥଟି ଅନୁଷ୍ଟୁପ୍ ଛନ୍ଦରେ
ଲିଖିତ ଏବଂ ସର୍ବମୋଟ ଶ୍ଳୋକସଂଖ୍ୟା ହେଉଛି ୧୩୧୭ । ସରସ
ମୋଦ ଏହାର ପ୍ରଧାନ ଟୀକା । ଟୀକାର କଲେବର ମୂଳ ତୁଳନାରେ
ଅତି ବିଶାଳ ।

---

କଟକ ନବଭାରତ ପ୍ରେସରେ
ଶ୍ରୀ ବନମାଳୀ ମିଶ୍ରଙ୍କ ଦ୍ୱାରା ମୁଦ୍ରିତ । ୧୯୪୮ ।

